# ଭକ୍ତିଚାଳିଶା

ବା

# ରତ୍ନକୁସୁମ ।



ଶ୍ରୀ ଭଗବାନଚରଣ ଦାସଙ୍କଦ୍ୱାରା

ପ୍ରଥମବାର

ରଚିତ ହୋଇ

ମୁଦ୍ରିତ ହେଲା ।



CUTTACK.

Printed by the Cuttack Printing Company.

Limited

1900

ମୂଲ୍ୟ ଟ ୦ ୵ ଅଣା ମାତ୍ର

# ସୂଚିପତ୍ର





# ଭକ୍ତିଉପହାର ।

ମାନନୀୟ ଗୁଣାକର ଶ୍ରୀଯୁକ୍ତ ମଧୁସୂଦନ ବାବୁ ଉତ୍କଳପ୍ରବେଶିକାସ୍ଥ
ମହୋଦୟ ଶ୍ରୀ କରକମଳେଷୁ,

ଅହେ ଶାନ୍ତ ଋଷିବର ବଙ୍ଗ ବିଶାରଦ
ସୁମାଳୀ ପୁଙ୍ଗବ ଅଟ କାବ୍ୟ ଉଦ୍ୟାନରେ,
ପବିତ୍ର ପ୍ରକୃତି ତବ ଗାମ୍ଭୀର୍ଯ୍ୟ ମୂରତି —
ଉତ୍କଳ ତମସାମଧ୍ୟରେ ସଦା ଧର୍ମ୍ମ ଚନ୍ଦ୍ର ;
ସକଳ ସୁଗୁଣରାଜି ସଧୀରେ ରାଜଇ
ପକ୍ଷପାତ ଦୋଷ ଗୁଣ ପର୍ଶି ନାହିଁ କେବେ ,
ରାଜବର୍ଗ ପ୍ରଜାବର୍ଗ ସରବ ଗୋଚର
ପ୍ରଶସ୍ତ ହୃଦୟ ତବ ନୁହେ ଛିଦ୍ରାନ୍ୱେଷୀ
ଉତ୍କଳ ଚନ୍ଦ୍ରାରେ ଅଟ ଅନନ୍ତ ହୃଦୟ
ନାନାଗୁଣେ ପରିପୂର୍ଣ୍ଣ ସଦା ସଦାଶୟ-
ରସାଧର୍ମ୍ମ ପକ୍ଷପାତି ଆଦର୍ଶ ଚରିତ-
ଗୁଣାକର, ସାଦରେ କରିବ ଗ୍ରହଣ ;
ଭକ୍ତି ହୀନ ଅଧମ କବି ଅର୍ଘ୍ୟ ଯାହା
ସଦୟେ ବରଦ ଭାବେ କର ତାରେ ମମ
ମାନସ ପୂରଣ; ସାଦରରେ ସମ୍ଭାଷଣ-
କର ସଦା ଯେଉଁ ମତ ଅନ୍ୟ ଅଟ ହୃଦେ;
ସେହି ମତ ସସ୍ନେହରେ ଦେଖିବ ଏହାକୁ
ମନ ଆବେଗ ନାଶନେ ଶ୍ରୀ କରେ ଅର୍ପିଲି ।

୧-୧-୧୯୦୦ }
ଅନୁଗୋଳ }

ବିନୀତ
ଗ୍ରନ୍ଥକାର ।

ଓଁ

# ଭୂମିକା ।

ମାନବ ହୃଦୟକୁ ଅଭିନିବେଶ ପୂର୍ବକ ଅନ୍ୱେଷଣ କଲେ ଏହା ସ୍ପଷ୍ଟ ରୂପେ ଅନୁମିତ ହେବ ଯେ ସର୍ବଂସହାରେ ଏକ ଅପରକୁ ଉପକାର କଲେ କିମ୍ବା ସଂସାରରେ ଏକ ଅପରକୁ ସହାୟ ହେଲେ କିମ୍ବା ସାଗରାମ୍ବରରେ ଏକ ଅପର ପ୍ରତି ସହାନୁଭୂତି ପ୍ରକାଶ କଲେ ଅଥବା ସହାରେ ଏକ ଅପରପ୍ରତି ସୁହୃଦ୍ୟା କଲେ ଅଥବା ସାଗର ମେଖଳାରେ ଏକ ଅପରକୁ ଦାନ କଲେ ଅବା ସମୁଦ୍ରାମ୍ବରରେ ଏକ ଅପରକୁ ପ୍ରେମ କିମ୍ବା ସ୍ନେହ କଲେ ଅବା ଶ୍ୟାମାରେ ଅପର ଏକର ଯେ କୌଣସି ପ୍ରକାର ମହାନୁଭାବକତା ଦର୍ଶନ କଲେ, ଏକ ପ୍ରତି ଅପରର ସେବା କିମ୍ବା ଭଜନା କରିବା ନିମନ୍ତେ ହୃଦୟରେ ଯେଉଁ ଆବେଗରୂପ ଅନିର୍ବଚନୀୟ ସସମ୍ଭ୍ରମତା ସହ ପ୍ରତ୍ୟୁପକାରତା, କୃତଜ୍ଞତା, ନମ୍ରତା, ବତ୍ସଳତା, ଅକପଟତା, ଏକାଗ୍ରତା, ବା ସରଳତାର ମୂର୍ତ୍ତିମାନ ଭାବ ପ୍ରକାଶ ପାଏ ତାହା ପ୍ରାଜ୍ଞମାନଙ୍କ ମତରେ ଅନୁରକ୍ତି, ଆଶକ୍ତି, ପ୍ରଶକ୍ତି, ଅନୁରାଗ, ଶ୍ରଦ୍ଧା, ଯୋଗ କିମ୍ବା ଉପାସନା ନାମରେ ଆଖ୍ୟାତ ଅଟେ । ମାନ୍ୟ ସ୍ଥଳରେ ଋଷିପ୍ରବର ବେଦମନ୍ତ୍ର ଶାଣ୍ଡିଲ୍ୟଙ୍କ କର୍ତ୍ତୃକ ବେଦରେ ଭକ୍ତି ଆଖ୍ୟା ପ୍ରଦତ୍ତ ହୋଇ ଅଛି । ଏହା ମାନବଗଣର ଈଶ୍ୱରଦତ୍ତ ସ୍ୱତଃସିଦ୍ଧ ସ୍ୱାଭାବିକ ଶ୍ରେଷ୍ଠ ମନୋବୃତ୍ତି ଅଟେ । ଭକ୍ତି ଅଭାବରେ ପ୍ରାଣିମାନେ ସତତ ପ୍ରାଣୀତ୍ୱହୀନ ବୋଲି ପ୍ରମାଣିତ । ଅନ୍ୟର ପ୍ରୀତି ଏହା ପଶୁପକ୍ଷୀ ନଗ ଆଦି ଜୀବ ମଧ୍ୟରେ ସୁଦ୍ଧା ଲକ୍ଷିତ ଅଛି । ଯେ ହେତୁ ମୃଗ ଦଂଶକ ଅବା କୃତଜ୍ଞଙ୍କୁ ଧାରଣରେ ପ୍ରଭୁ ଭକ୍ତ ବୋଲି ବୋଲନ୍ତି । ଆଉ ଉଦ୍ଭିଦମାନଙ୍କ

ମଧ୍ୟରେ ମଧ୍ୟ ତରୁଗଣଙ୍କରେ ମଞ୍ଜରୀ ସମୂହ ଭକ୍ତି ଅଶେଷ ଚଳନ୍ତ ବୋଲି ପ୍ରମାଣିତ । ଅତଏବ ଜଗତ ସତ ଏହି ଭକ୍ତି ସୂତ୍ରରେ ଜଡ଼ିତ ଜାତ୍ୟ ସମ୍ବନ୍ଧ ମଧ୍ୟ ଏହା ବ୍ୟତୀତ ରସାରେ କୌଣସି କାର୍ଯ୍ୟ ସମ୍ପନ୍ନ ହୋଇ ନ ପାରେ । ଅନ୍ୟ ଯେମନ୍ତ ପ୍ରାଣିଗଣଙ୍କ ହୃଦୟରେ ପ୍ରୀତି ନିହିତ ଥିଲେ ମଧ୍ୟ ତାହା କ୍ରମେ ସମସ୍ତ ରସାରେ ପ୍ରକାଶିତ ଏବଂ ଦାମ୍ପତ୍ୟ, ପାରିବାରିକ ଓ ଗୋଷ୍ଠୀୟ ଆଦିରୂପେ ବର୍ଦ୍ଧିତ ହୋଇ ଅବଶେଷେ ଜଗତ ସମ୍ମିଳନରେ ଈଶ୍ୱର ପ୍ରୀତି ଜାତ କଲେ ତାହାର ସମ୍ପୂର୍ଣ୍ଣ ବିକାଶ ପ୍ରାପ୍ତ ହୁଏ ଅଥବା ମହାବନସ୍ଥ ମହାପର୍ବତ କନ୍ଦରରୁ ସୁକ୍ଷୀଣ ନିର୍ଝର ନିର୍ଗତ ହୋଇ ନାନାଦି ସ୍ରୋତସ୍ରୋତ ସଙ୍ଗେ ସମ୍ମିଳନରେ କାଯ୍ୟ ବଢ଼ାଇ ମହାସମୁଦ୍ର ଯୋଗରେ ନିଜର ପ୍ରୀତି ସାଧନଦ୍ୱାରା ଭକ୍ତି ରକ୍ଷା କରେ ଓ ସାମାନ୍ୟ ଅବସ୍ଥାରୁ ଜର୍ଜ ଓ୍ୱାସିଂଟନ୍ ବା ନେପୋଲିଅନ ବୋନାପାର୍ଟ ଅଥବା ମହମ୍ମଦ ପ୍ରତାପସିଂହ ପର ପ୍ରଭୁ ପାଳନରୂପ ଭକ୍ତି ଦ୍ୱାରା ପ୍ରୀତି ହୃଦୟର ସାର୍ଥକତା ସମ୍ପାଦନ କରିବାର କିମ୍ବା ମହାତ୍ମା ଧର୍ମବୀର ଶ୍ରୀରାମ, ଶ୍ରୀକୃଷ୍ଣ, ବୁଦ୍ଧ, ଯୀଶୁ, ମହମ୍ମଦ, ଚୈତନ୍ୟ ଓ ରାମମୋହନ ରାୟ ଆଦି ମହାତ୍ମାଗଣ ଦୃଢ଼ବ୍ରତରେ ପ୍ରୀତି ପାଳନ କରିବା ପରି ଭକ୍ତି ବଢ଼ାଇ ସମ୍ମିଳନସ୍ରୋତରେ ସ୍ୱାଧୀନଭାବେ ଈଶ୍ୱର ପ୍ରୀତି ପ୍ରତି ଧାବିତ ହେବା ଭକ୍ତିର ପୂର୍ଣ୍ଣ ବିକାଶ ମାତ୍ର; ଏ ହେତୁ ଏ ତଦ୍‌ସମ୍ବନ୍ଧୀୟ ବୋଧସୌକର୍ଯ୍ୟାର୍ଥେ କେତେକ ସାମାନ୍ୟ ଉଦାହରଣସ୍ୱରୂପ ନିମ୍ନରେ ପ୍ରଦର୍ଶିତ ହେଲା ।

ଗ୍ରନ୍ଥକାର

# ଭକ୍ତିତରଙ୍ଗିଣୀ ।

## ବାଣୀ ମଧୂଣୀ ।

ଜନନୀ ଜଠରେ ଶିଶୁ ଈଶ୍ୱରେ
ଅଦୃଶ୍ୟ ଅବନୀକାୟା;
ଅବତରୁ ଧରା ଅର୍ପେତାକୁ ଭରା
ପ୍ରକୃତ ମୋହିନୀ ମାୟା । ୧ ।

ନାଡ଼ିଚ୍ଛେଦବେଳେ-କୁଆଁ ଶବ୍ଦ ହେଲେ ସବନ୍ତୀ ଆନନ୍ଦମନା;
ଜନନୀବଦନ—ସୁଖର ସଦନ ନେ କରେ ତାହା ଜଳନା । ୨ ।
ସନ୍ତାନହୃଦୟେ ହେଉ ଭକ୍ତ୍ୟୁଦୟେ ଜନମନେ ସ୍ନେହ ଜାତ;
ସ୍ନେହସଲିଳଜଳେ ଭକ୍ତିସ୍ରୋତ ଚଳେ ବଭକ୍ତ ତହୁଁ ସେ ସାତ । ୩ ।
ମାତା, ପିତା, ଗୁରୁ, ଭ୍ରାତ, ଭକ୍ତ-ଗୁରୁ, ପୃଥ୍ୱୀ, ପାତା ପଦ୍ମଯନ୍ତ୍ର;
ଏ ସପ୍ତ ସାଧନ ଭକ୍ତି ମୂଳଧନ ଅର୍ବ ଉର୍ଦ୍ଧ୍ୱ ଏହା ଅନ୍ତ । ୪ ।

---

୧ । - ଶିଶୁ ମା' ପେଟରେ ଥିଲା ବେଳେ ଈଶ୍ୱରଙ୍କ ଅଜ୍ଞାରୁ ପୃଥିବୀକୁ ଦେଖି ପାରେ ନାହିଁ ମାତ୍ର ଭୂମିଷ୍ଠ ହେଲେ ପୃଥିବୀର ସମସ୍ତ ମାୟାର-ହାର ପ୍ରକୃତଦେବୀ ଅର୍ପଣ କରେ ।

୨ ।— ନାଭିଛେଦ ବେଳେ ସନ୍ତାନର ଶବ୍ଦ ଶୁଣି ଅଶେଷ ଆନନ୍ଦ ଲଭନ୍ତି ଆଉ ଶିଶୁର ଖେଦସୂଚକ କାନ୍ଦ-ଶବ୍ଦକୁ ସ୍ନେହ-ସୂଚକ କୁଆଁ ଶବ୍ଦ ବୋଲି ମଣନ୍ତି ।

୩ ।— ମାତା ହୃଦୟରେ ସ୍ନେହରୂପ ଜଳଦ୍ୱାରା ସନ୍ତାନ ହୃଦୟରେ ଭକ୍ତିସ୍ରୋତ ବଢ଼େ; ଉକ୍ତଭକ୍ତିସ୍ରୋତ ସାତ ପ୍ରକାର ଅଟେ ।

୪ ।— ଅର୍ବ ଉର୍ଦ୍ଧ୍ୱ ମଧ୍ୟରେ ମାତା, ପିତା, ଗୁରୁ, ଭ୍ରାତ, ଭକ୍ତ, ରସା ଓ ଈଶ୍ୱରଂଯାଏ ଭକ୍ତିର ସାତପ୍ରକାର ସାଧନ ପ୍ରଥମ ମୂଳଭୂଅ-ସ୍ୱରୂପ ଅଟେ ।

ମାତାଙ୍କ ସ୍ୱରଙ୍ଗ ବନ୍ଧୁବର୍ଗଁ ଅଙ୍ଗ ଭକ୍ତି ଅଶ୍ରା ପରସ୍ପର;
ସପ୍ତ ମାତା ତହିଁ ବାହ୍ୟ ମେଳ ଯହିଁ ନିସ୍ୱାର୍ଥ ଭକ୍ତି ଅପର । ୫ ।
ଉର୍ଦ୍ଧ୍ୱଲୋକ ସପ୍ତ ଊର୍ଦ୍ଧ୍ୱଦେଶେ ସପ୍ତ ସପ୍ତର୍ଷି ନକ୍ଷତ୍ରାଙ୍କ କୋଳ,
ସପ୍ତବର୍ଣ୍ଣ ସତ ବିଷୟ ସପତ ସପ୍ତସ୍ୱର ନିତ୍ୟ ଗୋଳ । ୬ ।
ଏକା ଭକ୍ତି ତହିଁ ସ୍ୱବାରଣ ରହି ଅସାଧ କରେ ସାଧନ
ପ୍ରକୃତ ମାତାରେ ପୂଜା ସବଧିରେ ଏ ସଦା ବର କାରଣ । ୭ ।
ଲକ୍ଷ୍ମୀ ସ୍ୱରୂପିଣୀ ସେ ମୋକ୍ଷଦାୟିନୀ ରୂପାଙ୍ଗ ଦାୟିନୀ ଜନୀ;
ସାଗର ଉପାର ସେହି କର୍ଣ୍ଣଧାର ରେବତୀ ଭକ୍ତିର ମଣି । ୮ ।

---

୫ ।—ବିଧି ନିଯମରୁ ପରସ୍ପର ଭକ୍ତି ଅଶାରେ ନିଜର ସ୍ୱଧର ଅଙ୍ଗ ମାତା ଅଙ୍ଗରୁ ଲାଭ ହୁଏ ମାତା ପୃଥ୍ୱୀ ଆଦି ଅନ୍ୟ ମାତାମାନଙ୍କଠାରୁ କେବଳ ସ୍ୱାର୍ଥଭକ୍ତି ଲାଭ ହୁଅଇ ମାତ୍ର ନିସ୍ୱାର୍ଥ ଭକ୍ତି ଭିନ୍ନପ୍ରକାରେ ଅଟେ ।

୬।୭—ତଳରେ ଯେଉଁ ସାତ ପୁର ଅଛି ଆଉ ଉପରେ ଯେଉଁ ସାତପୁର ଅଛି ଆଉ ଅରୁନ୍ଧତୀଆଦି ଯେଉଁ ସାତ ନକ୍ଷତ୍ର ଅଛନ୍ତି, ଇନ୍ଦ୍ରଧନୁରେ ଯେଉଁ ସାତ ବର୍ଣ୍ଣ ଅଛି ଏବଂ ଗାନ୍ଧର୍ବ ବିଦ୍ୟାରେ ଯେଉଁ ସାତସ୍ୱର ଶରୀର ସପ୍ତଧାତୁରେ ନିର୍ମିତ ମଧ୍ୟ ସପ୍ତବାର ଓ ସପ୍ତ ବିଷୟ ଆଦିରେ ପ୍ରଭକ୍ଷଣ ଗୋଳ ହେଉଥାଆନ୍ତି କିନ୍ତୁ ପ୍ରକୃତ ମାତା ସାଙ୍ଗରେ ଭକ୍ତି ଯୋଗେ କଣ୍ଠ ମାତ୍ର ଗୋଳମାଳ ଘଟନ୍ତି ନାହିଁ ।

୮ ।—ଲକ୍ଷ୍ମୀ ତୁଲ୍ୟ ମୋକ୍ଷରୂପ ଓ ଅଙ୍ଗଦାନୀ ମାତା ଭବାର୍ଣ୍ଣବର କର୍ଣ୍ଣଧାର ସ୍ୱରୂପିଣୀ ଏବଂ ଭକ୍ତିର ସାର ଧନତୁଲ୍ୟ ଅଟନ୍ତି ।

ଲକ୍ଷ ଲକ୍ଷ ଧନ ସନ୍ତାନ ବର୍ଷଣ ମାତୃ ସେବା କରେ ଯେବେ;
ଅମ୍ବା ସ୍ନେହ ବନ୍ୟା ଗ୍ରୀଷ୍ମ ତୁଳନୀୟା ତାହେ ନୁହେ ଅନ୍ୟେ କେବେ ॥୯॥
ଗର୍ଭରେ ଧାରଣ ଭବରେ ପାଳନ ରୋଗ ଦୁଃଖ ନିବାରି;
ପ୍ରସୂର କଷଣ କେ କରେ ଗଣନ ସରବ ସ୍ନେହର-ସାର ॥ ୧୦ ॥
ପ୍ରାଥମିକ ଶିକ୍ଷା ଧାତ୍ରୀ ସ୍ନେହ ଦୀକ୍ଷା ଯେ ଜନ ଲଭେ ପ୍ରମାଣ
ଜଗତେ ପ୍ରଧାନ ଅଟେ ଧ୍ରୁବ ଜାଣ ଜୀବନୀ କରେ ବଖାଣ ॥୧୧॥
ସ୍ନେହ ଭକ୍ତି ଗଛ ବଧେ ଅନୁମତି ଭକ୍ତି ବଢ଼େ ସ୍ନେହବନେ
ଜନନୀ ହୃଦୟେ ସ୍ନେହର ଉଦୟେ ଭକ୍ତି ଜାତ ଶିଶୁ ମନେ ॥୧୨॥

---

୯ ।—ଯେବେ କୌଣସି ସନ୍ତାନ ବ୍ରହ୍ମାଣ୍ଡରେ ଅସଂଖ୍ୟ ଧନ ବର୍ଷି ରହି ଭକ୍ତି ଉଦ୍ଗତ ଭାବେ କେବଳ ମାତାଙ୍କ ସେବା କରେ ତେବେ ତାହାର ଅଜସ୍ର ଭକ୍ତି ସେବା ମାତା ସ୍ନେହର ତାହେ ସଙ୍ଗେ ସମାନ ନୁହେ ମଧ୍ୟ ତାଙ୍କ ସ୍ନେହ ବନ୍ୟା ରସା ତୁଳନା ହୋଇ ନ ପାରେ ।

୧୦ —ସନ୍ତାନ ଗର୍ଭକୁ ଆସିବା ଗର୍ଭରେ ରହିବା ପୃଥିବୀରେ ପାଳିବା ଏବଂ ରୋଗ ଶୋକରୁ ରକ୍ଷା କରିବା ଆଦି କର୍ମରେ ମାତାର କେତେ ଚିନ୍ତା ଓ କଷଣରେ ଦିନ ବ୍ୟୟ କରିବାକୁ ହୁଏ ତାହାର କଳନା କରାଯାଇ ନ ପାରେ ।

୧୧ —ଯେ ସନ୍ତାନ ମାତାର ସ୍ନେହ ଦୀକ୍ଷାରୂପ ପ୍ରଥମ ଶିକ୍ଷା ତାଙ୍କଠାରୁ ଲଭେ ସେ ନିଶ୍ଚୟ ପ୍ରଧାନତ୍ୱ ବା ମନୁଷ୍ୟତ୍ୱ ଲାଭ କରେ ।

୧୨—ବୟସ ଅନୁମତିରୁ ସ୍ନେହ ଭକ୍ତିର ପରିମାଣ ବୃଦ୍ଧି କରାଏ ଏବଂ ସ୍ନେହ-ରୂପ ଜଳରେ ଭକ୍ତିରୂପ ସୁଧାବୃକ୍ଷ ଅଙ୍କୁରିତ ହୋଇ ବୃଦ୍ଧି ପ୍ରାପ୍ତ ହୁଏ ଏ ହେତୁ ମାତା ମନରେ ସ୍ନେହ ଜନ୍ମିବାରୁ ସନ୍ତାନ ଚିତ୍ତରେ ଭକ୍ତି ଜନ୍ମଇ ।

ଭକ୍ତିରୁ ସତତ ସୁପ୍ରେମ ପ୍ରସୂତ ହୁଏ ଅବନୀ ବଦତ
ସ୍ୱାର୍ଥପର ଦେଖି ନିସ୍ୱାର୍ଥ ବଢ଼ାଇ ଜୀବସୂତ୍ରେ ପରିଚିତ । ୧୩ ।
ଅଜ୍ଞାନୀ ସୁଜ୍ଞାନ ଜାତ ହୁଏ ଜାଣ ଅମ୍ଭା ଯଥା ମାଟି ଦେହେ,
ପଙ୍କ ସରସୀରେ ଶୋଭେ ଅବୁଜରେ ତଥା ଭକ୍ତି ଦେଖି ଦେହେ ।୧୪
ଭକ୍ତିରେ ମଗନ ହୋଇ ଯେତ୍ରେଁ ଜନ ବଗରେ ସୁଦର୍ଶ୍ୱା ବହେ
ସକଳ କରମ ତାହାର ପୂରଣ କ୍ଷିତିରେ ସୁଯଶ ରହେ । ୧୫ ।
ଜଗତଜନନୀ ପ୍ରକୃତି ଜନନୀ ସର୍ବଶାସ୍ତ୍ର ବିଦ୍ୟାମାନ ।
ମାତା ପିତା ବିନା ନ ପୂରେ କାମନା ଗୁରୁ ଅର୍ପେ ଚକ୍ଷୁଜ୍ଞାନ ।୧୬।
ମାତା ପିତା ଗୁରୁ ସୁଭକ୍ତି ଆଗରୁ ଶିକ୍ଷା ଅର୍ପନ୍ତି ସ୍ୱସମ

---

୧୩।—ସର୍ବଦା ଭକ୍ତିରୁ ଉତ୍କୃଷ୍ଟ ପ୍ରେମ ଜନ୍ମଇ ବୋଲି ଉସାରେ ଖ୍ୟାତ ଅଛି ସ୍ୱାର୍ଥପର ମନୁଷ୍ୟ ଏ ଦ୍ୱାରା ଜଗତେ ନିସ୍ୱାର୍ଥଭାବ ବଢ଼ାଇବାର ପରିଚୟ ମିଳଇ ।

୧୪ ।—ମାଟି ଦେହରେ ଆମ୍ଭା କିମ୍ବା ପଙ୍କ ସରସୀରେ ପଦ୍ମ ଅବା ଅଜ୍ଞାନୀ ହୃଦୟେ ଜ୍ଞାନ ଶୋଭା ପାଇଲା ପରି ଶରୀର ଦେହରେ ଭକ୍ତି ଶୋଭା କରଇ ।

୧୫—ଯେଉଁ ବ୍ୟକ୍ତି ଭକ୍ତିବାନ୍ ହୋଇ ଉସାରେ ପରଦୁଃଖ ହରଣ କରେ ତାହାର ସକଳକାମନା ପୂର୍ଣ୍ଣ ହୁଏ ଓ କ୍ଷିତିରେ ସୁଯଶ ରହେ ।

୧୬—ସମସ୍ତ ଶାସ୍ତ୍ରବିଦ୍ୟାମାନ ଓ ଜଗତଜନନୀତୁଲ୍ୟ ପ୍ରକୃତି ଗାଈଉ ମାତା ଓ ପିତା ନ ଥିଲେ ଉସା ସମସ୍ତ କାମନା ପୂର୍ଣ୍ଣକରିପାରୁ ନ ଥାନ୍ତା କିମ୍ବା ଗୁରୁଦ୍ୱାରା ସମସ୍ତ ଜ୍ଞାନଚକ୍ଷୁ ପ୍ରଦତ୍ତ ହୋଇପାରେ।

୧୭—ଉତ୍କୃଷ୍ଟ ଭକ୍ତି ଜନ୍ମିବା ଗାତ୍ରରୁ ମାତା, ପିତା ଓ ଗୁରୁ ସୁଶିକ୍ଷା ଅର୍ପଣ କରନ୍ତି ମଧ୍ୟ ମାତୃସ୍ନେହ ହେତୁରୁ ଭ୍ରାତୃସୌହାଦ୍ରତା ବଢ଼ଇ;

ଭ୍ରାତୃସ୍ନେହ ଥାଇ ସୌହାଦ୍ର ବଢ଼ାଇ ଶ୍ରୀରାମ ଲକ୍ଷ୍ମଣ ସଙ୍ଗ । ୧୭ ।
ବେନି ଭାଇ ବନେ ଭ୍ରମଣୁ କଲେ ଅଗ୍ରଜ ଶୋଷେ ଅଜ୍ଞାନ ।
ପାନ୍ଥର ଶରଣୀ ଚେତନ ଶରଣୀ ଅନୁଜ ଖୋଜେ ସୁଜ୍ଞାନ ।୧୮।
ବନୁ ଲଭି ବନ ଆଣି ଚଇତନ ଜ୍ୟେଷ୍ଠେ ଚେତନ ବହିଲେ
ଭକ୍ତି ଅଭିଶଯ୍ୟ କାର୍ଯ୍ୟେ ପରିଚଯ୍ୟ ପରେ ଜଳେ ପିପାସିଲେ ।୧୯।
ଭ୍ରାତୃ ପ୍ରେମ ବଶେ ଚଉଦବରଷେ ନ କରି ଆହାର ଗ୍ରାସ
ଭାଇ ଭକ୍ତି ଧରି ବନେ ନାଶି ଅରି ମେଘନାଦ କଲେ ନାଶ ।୨୦।
ମାତାପିତା ଭକ୍ତି କରି ରାମ ଯତି ଅଦ୍ୟାରେ ପରମ ଧନ

---

ଯେମନ୍ତ ସୁମତୀ କୌଶଲ୍ୟାଙ୍କର ରାମ ଲକ୍ଷ୍ମଣଙ୍କ ପ୍ରତି ପୁତ୍ରବତ୍ ଅଭେଦ ସ୍ନେହ ଥିବାହେତୁ ବେନିଭାଇଙ୍କର ପରସ୍ପର ଅସାଧାରଣ ଭ୍ରାତୃସୌହାଦ୍ରତା ଜନ୍ମିଥିଲା ।

୧୮—ସୀତା ହରଣପର ରାମ ଲକ୍ଷ୍ମଣ ବନଭ୍ରମଣ କରୁଁ କରୁଁ ରାମ ତୃଷାର୍ତ୍ତରେ ଅଜ୍ଞାନ ହେବାରୁ ପଥିକର ପଥ ତ୍ୟାଗକରି ପୃଥିବୀରେ ଜଳ ଅନୁସନ୍ଧାନ କରିଥିଲେ ।

୧୯ ।—ଲକ୍ଷ୍ମଣ ଯେତେ ଶୀଘ୍ର ପାରନ୍ତି ବଣମଧ୍ୟରୁ ଜଳ ଆଣି ଶ୍ରୀରାମଙ୍କ ଚେତନା କରାଇଲେ ସେ ଏତେ ବ୍ୟଗ୍ରତା ସହିତ ଏକାର୍ଯ୍ୟ ସମ୍ପାଦନ କରିଥିଲେ ଯେ ପରେ ସ୍ୱୟଂ ଏଥିପାଇ ପିପାସିତ ହେଲେ । ଏହା ଦ୍ୱାରା ତାଙ୍କର ଭ୍ରାତୃଭକ୍ତିର ଚରମ ପରିଚୟ ମିଳଇ ।

୨୦ ।—ଲକ୍ଷ୍ମଣ ଭ୍ରାତୃପ୍ରେମବଶରୁ ଚଉଦବର୍ଷ ଆହାର ନିଦ୍ରା ନ କରି ଶ୍ରୀରାମଙ୍କ ଆଜ୍ଞା ପାଳନ କରିଥିଲେ ଏଯୋଗେ ତାଙ୍କ ଶତ୍ରୁ ଇନ୍ଦ୍ରଜିତଙ୍କୁ ବଧ କରିବାକୁ ସମର୍ଥ ହୋଇଥିଲେ ।

୨୧ ।—ମାତାପିତା ଭକ୍ତି ପାଳନଦ୍ୱାରା ଶ୍ରୀରାମ ଏଯୋଗେ ଅବନୀରେ ପରମ ଧନ; ବନଗମନ, ସମୁଦ୍ର ବନ୍ଧନ ଓ ଏକାକୀ ଯୁଦ୍ଧ ଜୟ

କରଥିଲେ ଯାହା ସହଜ କ ତାହା ଭକ୍ତିରେ ସୌଣୀବନ୍ଧନ ।୨୧।
ଦାତା କର୍ଣ୍ଣଭକ୍ତି ପଦ୍ମାବତୀ ଉକ୍ତି କିସ୍ତଲା ମଧ୍ୟେ ପ୍ରଥମ
ଶ୍ରୀମତୀ ସୁନନ୍ଦା ପ୍ରେମଭକ୍ତି ସର ଉର୍ବୀରେ ନେ ଅଂଶେ ସମ ।୨୨।
ଭର୍ତ୍ତୃଭକ୍ତି କର ସାବିତ୍ରୀ ସୁନନ୍ଦା କ୍ଷମାରେ ସ୍ୱମତୀସାର
ସେପରି ଭାବରେ ପ୍ରଭୁ ସମାଦରେ ଯେ ଦେବୀ ସେ ଶ୍ୟାମାଗାର ।
କୃଷ୍ଣ ଭକ୍ତିଭରେ ଦ୍ୱାପରଯୁଗରେ ଗୁରୁ ପୁତ୍ର ଅଣିଦେଲେ ;
ନରତନ୍ତ୍ର ବାଳ କାରଣ କଟାଳ ଲକ୍ଷ ସ୍ୱର୍ଣ୍ଣ ଦେଲେ ଦେଲେ ।୨୪।

---

ଆଦ କାର୍ଯ୍ୟମ କ ଯାହା କରଥିଲେ ଏପର ମାନବ ଦେହୀ କେହି କରିବା ଅସମ୍ଭବ ଅଟେ ।

୨୨ ।—ଦାତା କର୍ଣ୍ଣ ପ୍ରଭୁଙ୍କ ପରୀକ୍ଷାରେ ପଡ଼ି ଯେପରି ଅବିଚଳିତ ହୃଦୟରେ ଭକ୍ତି ଦେଖାଇଥିଲେ ଆଉ ତତ୍କାଳନ ତାଙ୍କ ସ୍ତ୍ରୀ ପଦ୍ମାବତୀ ଯେପରି ଧୈର୍ଯ୍ୟ ଶୀଳତାର ଉକ୍ତି ପ୍ରଦାନ କରଥିଲେ ତାହା ପୃଥିବୀରେ ପ୍ରଥମ ଅଟେ ଏବଂ ଶ୍ରୀମତୀଙ୍କ ଲବ୍ଧାଭକ୍ତି ଜଗତରେ ଅତୁଳନୀୟ ଅଟେ ।

୨୩ ।—ମହାସତୀ ସାବିତ୍ରୀ ଦେବୀ ସ୍ୱାମୀ ସତ୍ୟବାନଙ୍କୁ ଯେପରି ଈଶ୍ୱର ଭକ୍ତି ହେତୁ ବଞ୍ଚାଇବାର ଶାସ୍ତ୍ରୀୟ ପ୍ରମାଣ ମିଳେ ସେପରି ଯେଉଁ ନାରୀ ନିଜସ୍ୱାମୀ ନିମନ୍ତେ ପ୍ରାଣ ଦେବାକୁ ପ୍ରସ୍ତୁତ ହୁଅନ୍ତି ସେପରି ପୃଥିବୀ ଇତିହାସରେ ବିରଳ ଏହେତୁ ସାବିତ୍ରୀ ଏବିଷୟେ ସର୍ବ-ପ୍ରଧାନା ଅଟନ୍ତି ।

୨୪ ।—ଦ୍ୱାପରଯୁଗରେ ପ୍ରଭୁ ଶ୍ରୀକୃଷ୍ଣ ଗୁରୁଙ୍କଠାରୁ ସମସ୍ତ ପାଠ ଅଧ୍ୟୟନ କରି ଗୁରୁ ଭକ୍ତି ପ୍ରବଳ ହେତୁ ଗୁରୁଙ୍କ ପ୍ରାର୍ଥନାକ୍ରମେ ତାଙ୍କ ମରିଯାଇଥିବା ପୁତ୍ର ଅଣିଦେଲେ ମଧ୍ୟ ନରତନ୍ତ୍ର ନିଜଭକ୍ତିରୁ

ନାକଦେବରାଜ ଗୁରୁ ଭକ୍ତି ଲାଜ ସର୍ବାଙ୍ଗେ ସହସ୍ର ଚିହ୍ନ;
ନାଶନେ ଗୌରବ ଲଭ ସେ ବିଭବ ଗୁରୁ କରୁଣାରୁ ଭିନ୍ନ ।୧୫।
ବିଦ୍ୟା ବୁଦ୍ଧି ଜ୍ଞାନ ବୃଦ୍ଧିରେ ପ୍ରମାଣ କର ଭ୍ରାତୃଭକ୍ତି କର;
ମାତାପିତା ଜାଣ ଦୃଗୁରୁ ସମାନ ତଲାଭକ୍ତି ହୃଦେ ଧର ।୧୬।
ଭକ୍ତି ହେତୁ ଭକ୍ତ ଅଟନ୍ତି ଯେ ସତ ସଦା ତରଣୀ ଚାଳକ;
ଭକ୍ତି ସୃଷ୍ଟି କର୍ତ୍ତା ଶାଣ୍ଡିଲ୍ୟ ବେଦମନ୍ତ୍ର ମର ଅବନୀ ପାଳକ ।୧୭।
ଗୁରୁ ଭକ୍ତି ଜାଣି ଭକ୍ତି ଗୁରୁଠାଣି ପ୍ରକାଶିବ ଧନ୍ୟ ଧାମ
ପ୍ରକୃତ ପୁରୁଷରୂପେ ସୁପୁରୁଷ ବିରାଜନ୍ତି ବଣ୍ଣରାମ । ୧୮ ।

---

କଟାଳ କର ଗୁରୁଙ୍କୁ କୁବେର ପୁରୀରୁ ଲକ୍ଷ ସ୍ୱର୍ଣ୍ଣମୁଦ୍ରା ଆଣିଦେଇ ଅଦ୍ୟାପି ଗୁରୁ ଭକ୍ତିର ପଥପ୍ରଦର୍ଶନ କରି ଯାଇ ଅଛନ୍ତି ।

୧୫ ।—ଦେବରାଜ ଇନ୍ଦ୍ର ଗୁରୁପତ୍ନୀସଙ୍ଗେ ଅସତବ୍ୟବହାର କରିଥି-ବାରୁ ଗୁରୁ ଅଭିଶାପରୁ ସହସ୍ର ଇନ୍ଦ୍ରିୟ ଲାଭ କରିଥିଲେ ପୁଣି ବନ୍ଧୁ ପ୍ରାର୍ଥନାରେ ଗୁରୁ ସୁଦୟାରୁ ସହସ୍ରାକ୍ଷ ହୋଇ ସେହି ନାମ ଧାରଣ କରୁଅଛନ୍ତି ।

୧୬ ।—ବିଦ୍ୟା ବୁଦ୍ଧି କିମ୍ବା ଜ୍ଞାନରେ ସମାନ ଯେ ସେହିଠାରେ ମିତ୍ରବତ୍ ଭ୍ରାତୃଭକ୍ତି କରିବା ବିଧେୟ ଆଉ ମାତାପିତା ଓ ଗୁରୁଙ୍କୁ ଭକ୍ତି କଳ୍ପତରୁ ପୃଥ୍ୱୀରୁ ଭକ୍ତି କରିବା ବାଞ୍ଛନୀୟ ।

୧୭ ।—ଭକ୍ତମାନେ ଏହିପରି ଭକ୍ତି କରି ଭବସଂସାର ନୌକାଚାଳକ ସ୍ୱରୂପ ଅଟନ୍ତି; ଏହି ସର୍ବୋତ୍କୃଷ୍ଟ ମଙ୍ଗଳକାରୀ ଭକ୍ତି ସର୍ବ ପ୍ରଥମ ବେଦଜ୍ଞ ଶାଣ୍ଡିଲ୍ୟ ଅବନୀରେ ପ୍ରଚାର କରି ଅଜ୍ଞାନୀଙ୍କୁ ସୁପଥ ପ୍ରଦାନ କରିଅଛନ୍ତି ।

୧୮—ଉପଦେଶକଙ୍କଠାରୁ ଶ୍ରେଷ୍ଠଭକ୍ତି ଜାଣି ସଂସାରରେ ପ୍ରକୃତ

ଭଦ୍ର ଶିଷ୍ଟ ଶାନ୍ତ ବିନୟୀ ସିଦ୍ଧାନ୍ତ ଧୀରତା ଅଧ୍ୟବସାୟୀ
ବିଜ୍ଞ ଭକ୍ତ ଜ୍ଞାତ ସୁମତି ସ୍ୱଦାନ୍ତ ମନୋଯୋଗ ଭାବ ଧ୍ୟାୟୀ । ୨୯।
ଭକ୍ତି ସୁମମାନ କଲେ ଉପାର୍ଜନ ଭକ୍ତ ସମାଜେ ମିଶିବ
କରୁଣା ଆବାସ ଭାବ ଜଗଦୀଶ ହୃଦାନ୍ତରେ ପ୍ରକାଶିବ ।୩୦।
ପାରରେ ପ୍ରମାଣ ଅଶାନ୍ତ ପ୍ରଧାନ ନ ଲଭେ ଭକ୍ତି ସୁଧନ;
ଅନାଦି ଅନନ୍ତଜ୍ଞାନ ସୀମାନନ୍ତ ହେଲେ ଲଭ ଭକ୍ତି ଧନ । ୩୧ ।
ସତ୍ୟ ଭକ୍ତି ଧନ ବିଭୁକୃପାବନ ସୁଜ୍ଞାନୀ ଜ୍ଞାନ ଦେଖିଲେ;
ପ୍ରେମସୁଧାଝର ଲଭ ନାନ୍ୟର ଉପରେ ଧାର ନ ମିଳେ। ୩୨ ।

---

ପୁରୁଷରୂପେ ଯେ ବିଶ୍ୱରାମ ଶ୍ରୀହରି ବିରାଜିତ ଅଛନ୍ତି ତାହାଙ୍କୁ ଭକ୍ତି କରିବାର ଶିକ୍ଷା କରିପାରିବ ।

୨୯—ସୁମତି ସ୍ୱଦାନ୍ତଭାବେ ମନଯୋଗୀ ହୋଇ, ଅଧ୍ୟବସାୟିତା, ଧୀରତା ବିନୟିତା, ଭଦ୍ରତା, ଶିଷ୍ଟତା, ଓ ଶାନ୍ତଭାବରେ ବିଜ୍ଞଭକ୍ତଙ୍କୁ ଚିହ୍ନି ପାରିବ ।

୩୦— ଭକ୍ତରୂପ ଉପବନରେ ପ୍ରବେଶ କରି ଜ୍ଞାନରୂପଭକ୍ତି ପୁଷ୍ପରାଶି ଚୟନ କରି ପାରିଲେ କରୁଣାର ଗୃହସ୍ୱରୂପ ଜଗଦୀଶ୍ୱରଙ୍କ ଭାବ ଅନ୍ତଃକରଣରେ ଲାଭ କରିପାରିବ ।

୩୧—ସଂସାରରେ ଅସନ୍ତୁଷ୍ଟ ବ୍ୟକ୍ତିଗଣ ଭକ୍ତି ଧନ ଲାଭ କରି ପାରନ୍ତି ନାହିଁ ଯେବେ ନିଜ ଜ୍ଞାନସୀମା ଅସୀମ କରିବ ତେବେ ଅନାଦି ଅନନ୍ତ ଭକ୍ତି ଧନ ଲାଭ କରିପାରିବ ।

୩୨—ଉତ୍କୃଷ୍ଟ ଜ୍ଞାନୀଠାରୁ ପ୍ରଭୁ କୃପାବାରି ତୁଲ୍ୟ ଭକ୍ତିରୂପ ସୁଜ୍ଞାନ ଲାଭ କଲେ ସୁଧାର ପ୍ରେମଝରରୂପ ଭକ୍ତି ଧନ ଲାଭ ହେବ କାରଣ ଅନ୍ୟାନ୍ୟ ମାୟାଜଡ଼ିତ ଅଟେ ।

ଯହିଁ ଅସେ ଜୀବ ତହିଁ କଶେଁ ଯିବ ଭୂଗୋଳମାୟା ଭଅଣ;
ଅନତ୍ୟ ବିଷୟରେ ସ୍ଥିରନୁହେ ବାରେ ଭକ୍ତି ସଦା ନିତ୍ୟ ଜାଣ । ୩୩ ।
ମାତୃଭକ୍ତି ତୁଲ ଭୁବନେ ଅତୁଳ ନାହିଁ ଆଉ ନ ଘଟିବ;
ତଦନ୍ତେ ଯେ ନୀତ ପରମରେ ପ୍ରୀତ ଘଟିଲେ କ ସେ ତୁଟିବ ।୩୪।
ବାଲ୍ମୀକିସୂମନ୍ତ୍ର ଈଶ୍ୱରଭକତ ମାଟିଦେହ ମାଟିକଲ;
ହିତୈଷୀମୂରତ ପ୍ରତାପଭକତ ଓୟାସିଙ୍ଗଟନସର । ୩୫ ।
ଦୟାଦୃଢପଣେ ନିସତ୍ୟ କଥନେ ଅମୂଲ୍ୟ ଭକ୍ତିଭୂକର;
ଜୀବନସଙ୍ଗେ ପ୍ରତିଜ୍ଞାତଅଗେ ନ ହୁଅ ଅଘକଙ୍କର । ୩୬ ।

---

୩୩ — ଆତ୍ମାରୂପ ଜୀବ ଯେଉଁଠାରୁ ଆସିଅଛୁ ସେଠାକୁ ନିଜ ସୁକୃତ ଦୁଷ୍କୃତ ଅନୁସାରେ ଯିବ ମଧ୍ୟ ଏ ସଂସାରରେ କିଛି ନିତ୍ୟ ନୁହେ ସବୁ ଅସ୍ଥିର କେବଳ ଭକ୍ତି ନିତ୍ୟ ଓ ସ୍ଥିର ଅଟେ ।

୩୪ — ମାତୃଭକ୍ତି ସଂସାରରେ ଅତୁଳ ଅଟେ । କିନ୍ତୁ ଜଗଦୀଶ୍ୱରଙ୍କ-ଠାରେ ଭକ୍ତିପ୍ରୀତ ଜନ୍ମିଲେ ଆଉ ସେ ତୁଟଇ ନାହିଁ ।

୩୫ — ବାଲ୍ମୀକି ବ୍ରହ୍ମାଙ୍କଠାରୁ ସୁମନ୍ତ୍ର ଲାଭ କରି ମାଟିଦେହ ମାଟିରେ ମିଶାଇ ଈଶ୍ୱରଭକ୍ତି ଲାଭ କଲେ ଏବଂ ଭାରତର ପଶ୍ଚିମସ୍ଥ ପ୍ରତାପସିଂହ ଓ ଆମେରିକାସ୍ଥ ଜର୍ଜଓୟାସିଙ୍ଗଟନଙ୍କର ଦେଶ ହିତୈଷୀ ଭକ୍ତି ଇତିହାସ କି ପ୍ରକାର ବଜ୍ରନିର୍ଘୋଷରେ ଘୋଷଣ କରୁଅଛି ତାହା ସବୁ ବିଦିତ ଅଛି ।

୩୬ — ଦୟାଭାବେ ସତ୍ୟକହିବାଦ୍ୱାରା ଯେଉଁ ମହାତ୍ମା ଦୃଢତାଉପରେ ଭକ୍ତି ରକ୍ଷା କରନ୍ତି ସେ କେବେ ପ୍ରତିଜ୍ଞାଭଙ୍ଗ ଦୋଷରୁ ପାପରୂପ ଦୋଷରେ କମନ୍ଦିତ ହୋଇ କଷ୍ଟଭୋଗ କରନ୍ତି ନାହିଁ ।

ଯୁଧିଷ୍ଠିର ଧୀର ଭକ୍ତ ଧର୍ମବୀର ଅଛୁ ଯା ଶ୍ରାବ୍ୟ ସ୍ୱରବେ;
ବର୍ଦ୍ଧ ଭକ୍ତି ଯାହା ସ୍ୱାର୍ଥତ୍ୟାଗକାରୀ ଦୃଶ୍ୟାପରେ କି ସ୍ୱରବେ ।୩୭ ।
ସ୍ନେହ ବଢ଼େ ଭକ୍ତି ଭକ୍ତିରୁ ପ୍ରୀତିତ ପ୍ରୀତିରୁ ପ୍ରପଞ୍ଚ ଜାତ;
ପ୍ରପଞ୍ଚୀ ଅର୍ଜୁନ ସଖା ଭଗବାନ ଭକ୍ତି ଦୃଢ଼େ ସଦାଯୁତ । ୩୮ ।
ପ୍ରକୃତ ପ୍ରପଞ୍ଚନ ରକ୍ଷିବ ମଞ୍ଚ ଜାଣିବ ତନ୍ତୁ ସୂଜନ;
ଦୃଢ଼ଭାବେ ଧର ଭକ୍ତି ସୂକ୍ଷ୍ମବର ଲଭିବ ଭକ୍ତି ରତନ । ୩୯ ।
ଅଙ୍ଗାରଜସତ ସ୍ୱାରକ ମହତ ଭକ୍ତି ତେବେ ହୃଦମଣି
ଘୃଦାକଳ ଅନ୍ତେ ସତ୍ୟ ସୁଧାବନେ ଭକ୍ତି କହିନୂର ଖଣି । ୪୦ ।

---

୩୭ । ମହାଭାରତରେ ଧର୍ମବୀର ଯୁଧିଷ୍ଠିରଙ୍କର ଯେପର ସତ୍ୟବ୍ରତ, ଧୀରତା, ପ୍ରତିଜ୍ଞାପାଳନ, ସତ୍ୟକଥନ ଓ ସ୍ୱାର୍ଥତ୍ୟାଗ ଆଦ ଭକ୍ତି ଭାବମାନ ଦେଖାଯାଏ ସେପର ଅପରେ ବିରଳ ଅଟେ ।

୩୮ ।—ଭକ୍ତିରେ ସ୍ନେହ ବଢିଲେ ସେଥିରୁ ପ୍ରୀତି ଜନ୍ମଇ ସେହି ପରମ ପ୍ରୀତିରୁ ଏ ପ୍ରପଞ୍ଚ ପ୍ରକୃତ ସଂସାର ଉତ୍ପନ୍ନ, ଦେଖ ସଂସାରୀ ଅର୍ଜୁନ ଈଶ୍ୱର ଭକ୍ତି ହୃଦେ ଧର ତାହା ଅଧୃତରେ ଶ୍ରୀକୃଷ୍ଣଙ୍କୁ ସଖାରୂପେ ଲଭିଥିଲେ ।

୩୯ । କାମ, କ୍ରୋଧ, ମୋହ, ମାତ୍ସର୍ଯ୍ୟ ଆଦ ପଞ୍ଚମନ ଓ ପଚଶପ୍ରକୃତି ଜଡିତ ସଂସାରରୁ ଆତ୍ମା ତାରିବାର କେବଳ ଏକମାତ୍ର ଭକ୍ତିରୂପ ସୂତ୍ର ଅଟେ । ତାହା ସୂକ୍ଷ୍ମଜନଗଣ ଜାଣି ସତ୍ୟ ଅଷ୍ଟା କର ଭକ୍ତି ରୂପ ରତ୍ନ ଲାଭ କରନ୍ତି ।

୪୦ ।— କୋଇଲାରୁ ହୀରା ଜନ୍ମିଲା ପର କଣର ପାପକ୍ଷୟରରେ ଭକ୍ତି ଜନ୍ମିଲେ ସେହି ହୃଦର ଅମୂଲ୍ୟ ମଣି, କଳିଯୁଗରେ ସତ୍ୟଯୁଗ, ଅମୃତ କିମ୍ବା ଅତୁଳନୀୟ ଅମୂଲ୍ୟ କୋହିନୂର ସଦୃଶ ଅଟେ ବୋଲି ସତତ ସୂକ୍ଷ୍ମଜ୍ଞ ପଣ୍ଡିତମାନେ ମୁକ୍ତକଣ୍ଠରେ ସ୍ୱୀକାର

କରନ୍ତୁ । ଅତଏବ ଏହା ଯଥା ବିହିତ ଶିକ୍ଷା ଦେଇବାକୁ ସର୍ବଦା ସଚେଷ୍ଟ ହେବା ସର୍ବତୋଭାବେ ଯୁକ୍ତି ଯୁକ୍ତ ଓ ଉଚିତ ଅଟେ । କାରଣ ଏଥିରୁ ନିଃସନ୍ଦେହ ଧର୍ମ, ଅର୍ଥ, କାମ ଓ ମୋକ୍ଷ ଆଦି ଚତୁର୍ବର୍ଗ ଫଳଲାଭ ହେବାର ସମ୍ପୂର୍ଣ୍ଣ ସମ୍ଭାବନା ।

---

## ଉପସଂହାର ।

ଶିଶୁଗଣ ନିଜମନ ନିଶ୍ଚଳ କରି ଜ୍ଞାନ ନୟନ ଉନ୍ମୀଳନ ପୂର୍ବକ ଉକ୍ତ ସର୍ବ ବିଷୟମାନ ଆଲୋଚନାଦ୍ୱାରା ଚିନ୍ତା କଲେ ଦୃଢ଼ ବିଶ୍ୱାସରେ ପ୍ରତ୍ୟକ୍ଷରେ ଜାଣି ପାରିବ ଯେ ଯେଉଁ ମାତାଙ୍କ ଅଚିନ୍ତନୀୟ ବାତ୍ସଲ୍ୟ ସ୍ନେହରୁ ପାଗରେ ମାନବତ୍ୱ ଲାଭ କରି ପରମ ସୁଖ ଭୋଗରୂପ ଅନନ୍ତ ରତ୍ନର ଅଧିକାରୀ ହେଲ; ସେହି ଅତୁଳନୀୟା ପୂଜନୀୟା ଜନନୀ ତୁମ୍ଭର କି ପ୍ରକାର ଉପକାରିଣୀ ଅଟନ୍ତି; ଅତଏବ ତାହାଙ୍କଠାରେ କୃତଜ୍ଞତା ରୂପ ସେବାଦ୍ୱାରା ସମ୍ମୁଖରେ ତୁମ୍ଭର ଭକ୍ତି ପ୍ରଦର୍ଶନ କରିବା କି ପ୍ରକାର ସର୍ବତୋଭାବେ ବିଧେୟ ଓ ସେ ମର୍ତ୍ତ୍ୟଦେବତାଙ୍କୁ କେମନ୍ତ ଆରାଧନା କରିବା ସର୍ବବାଦି ସମ୍ମତରେ କର୍ତ୍ତବ୍ୟ କାର୍ଯ୍ୟ ଆଉ ସେ ରୂପାଙ୍ଗ ଦାୟିନୀ ମୋକ୍ଷଦା ସମସ୍ତ ଜ୍ଞାନେନ୍ଦ୍ରିୟ ଏକକ ରୂପ ପ୍ରେମ ପୂର୍ଣ୍ଣ ଅନିମିଷନୟନରେ ତୁମ୍ଭଙ୍କୁ କେମନ୍ତ ନିରୀକ୍ଷଣ କରନ୍ତି, ତାହା ତୁମ୍ଭର ପ୍ରତ୍ୟେକ ରକ୍ତ ବିନ୍ଦୁରେ ସତତ ଅନାୟାସରେ ହୃଦୟଙ୍ଗମ କରି ପାରୁଥିବ । ଯେବେ ତୁମ୍ଭ ହୃଦୟସ୍ଥ ଭକ୍ତି ଅସଳ ଏହିର ପରମାରାଧ୍ୟା ଦେବୀଙ୍କର ଆସନ ନ ହୁଏ; ମଧ୍ୟ ତାଙ୍କର ପାଦପଦ୍ମ ଭକ୍ତି ଜଳରେ ଧୌତ କରି ନ ଦିଅ; ଆଉ କାୟମନୋବାକ୍ୟରେ ତାହାଙ୍କର ଇଚ୍ଛା ଜାଣି ସେବା ପୂଜା ନ କର, ତେବେ ନିଶ୍ଚୟ ବୁଝିବ ଯେ ତୁମ୍ଭର ଚିରନିବାସଂବୃତ ଅଜ୍ଞାନାଚ୍ଛନ୍ନ ପାଶବତ୍ୱ ଦୂର ହୋଇ ନାହିଁ ।

---

ଅନ୍ତତ୍ୟ ଉପାରେ ଜନ୍ମଦାତା ଆଦ୍ୟଗୁରୁ ଜନକଙ୍କ ପ୍ରତି ସନ୍ତାନର ସର୍ବତୋଭାବେ ଭକ୍ତି କରବା ଯେ କେତେ ଦୂର କର୍ତ୍ତବ୍ୟ ପରାୟଣ ତାର କାର୍ଯ୍ୟ ତାହା ସଦା ମରରପାରେ ଅତୁଲନୀୟ ଅଟେ । ସନ୍ତାନ ସର୍ବ ବିଷୟରେ ମନୁଷ୍ୟ ହେବାଯାଏ ପିତାଙ୍କର ଯେ କେତେ ଦୂର ଗୁରୁଭାର ସାବଧାନସହ ବହନ କରବାକୁ ପଡ଼ଇ ତାହା ଜଗତ ପିତା ପରମେଶ୍ୱରଙ୍କ ବ୍ୟତୀତ ଅପର ସମ୍ପୂର୍ଣ୍ଣରୂପେ ଜ୍ଞାତ ହେବା ସୁକଠିଣ ଅଟେ । ସନ୍ତାନ ଗର୍ଭରେ ଥିବା ବେଳେ ପ୍ରସୂତି ପ୍ରତି ଯତ୍ନ କରବା ପିତାର ୧ମ କାର୍ଯ୍ୟ । ଭୂମିଷ୍ଠ ହେଲେ ସନ୍ତାନ ସୁସ୍ଥରେ ରହିବା ପାଇଁ ଯତ୍ନ କରବା ଜନକର ୨ୟ କାର୍ଯ୍ୟ । ଅନନ୍ତର କ୍ରମେ ବର୍ଦ୍ଧିଷ୍ଣୁ ହୋଇ ସ୍ୱୟଂ ପାନ ଆହାର କରବାକୁ ସକ୍ଷମ ହେବା ଯାଏ ବିଶେଷ ସାବଧାନ ହୋଇ ଅଭାବମାନ ପୂରଣ କରବା ପିତାର ୩ୟ କାର୍ଯ୍ୟ । ସନ୍ତାନର ସାମାନ୍ୟ ଅର୍ଦ୍ଧସ୍ଫୁଟିତ ଅମୃତାୟମାନ ବାଲଭାଷ ସ୍ୱର୍ଗୀୟ ସୁଧାବତ ପିତା ମାତାଙ୍କ କର୍ଣ୍ଣତୃପ୍ତି ଜନ୍ମାଇଲେ ମଧ୍ୟ ତାହାର ସାମାନ୍ୟ ଜ୍ଞାନ ଓ ଧାରଣାଶକ୍ତି ଜନ୍ମିଲେ ସେ କିପ୍ରକାର ଶିକ୍ଷାଲାଭ କରବ ସେଥି ପ୍ରତି ଚେଷ୍ଟା କରବା ପିତାଙ୍କର ୪ର୍ଥ କାର୍ଯ୍ୟ । କ୍ରମେ ସନ୍ତାନ ସୁଶିକ୍ଷା କରବାରେ ପ୍ରବୃତ୍ତ ହେଲେ ପିତା ସେ ସମୟରେ ବାଳକର ଆହାରୀୟ ଓ ବ୍ୟବହାରୀୟ ଦ୍ରବ୍ୟମାନ ସାଧ୍ୟମତ ଯୋଗାଇ ଦେଇ ପାରି ସୁଖୀ ହେବା ଜନକଙ୍କର ୫ମ କାର୍ଯ୍ୟ ଅଟେ । ଅନନ୍ତର ସନ୍ତାନ ଗମନାଗମନସହ କଥୋପ କଥନ କରବାକୁ ସକ୍ଷମ ହେଲେ ପିତାମାତା ବାଳକଙ୍କୁ ସଙ୍ଗରେ ନେଇ କିମ୍ବା କଳ କୌଶଳରେ ଜାତ କର୍ମଠାରୁ ଶ୍ମଶାନ କର୍ମ ପର୍ଯ୍ୟନ୍ତ ସର୍ବସଂହାର ସର୍ବ କାର୍ଯ୍ୟମାନ ଓ ସ୍ଥାନ ସାଧ୍ୟମତ ଦେଖାଇ ଶିଖାଇ ସନ୍ତୁଷ୍ଟ ହେବା ଜନକଙ୍କର ୬ଷ୍ଠ କାର୍ଯ୍ୟ ଅଟେ । ଅନନ୍ତର ସନ୍ତାନ ସର୍ବ ବିଷୟରେ ଉପଯୁକ୍ତ ହୋଇ ସାଂସାରିକ କାର୍ଯ୍ୟମାନ

ସୁସନ୍ତାନରେ ପାଳନ ପୂର୍ବକ ବିଧିମତ ଧର୍ମଶିକ୍ଷା କରି ସ୍ୱାଭିମତ ସାଂସାରୀ ହୋଇ ପାରିବାର ପିତାମାତା ଦେଖିଲେ; ସନ୍ତୁଷ୍ଟରେ ସନ୍ତାନ ମଙ୍ଗଳାଶିର୍ବାଦ କରିବା ସେମାନଙ୍କର ଧର୍ମ କାର୍ଯ୍ୟ ଅଟେ । ଅତଏବ ଏପରି ଗୁରୁଦେବ ଦେଖ ଜନକ ଜନନୀଙ୍କୁ ଯେଉଁ ସନ୍ତାନ ଦୃଢ଼ଭାବରେ କୃତଜ୍ଞତାରୂପ ଭକ୍ତି ନ କରିବ ତାହାକୁ ଧିକ ଧିକ ।

ଉକ୍ତ ଗର୍ଭୀର ଦକ୍ଷିଣାଂଶ ପଶ୍ଚିମକୂଳର ନିକଟବର୍ତ୍ତୀ ହାବେଲୀ ମେଖଳା ଉକ୍ତ ପଟଣରେ ନ୍ୟାୟପରାୟଣ ଭଗବାନ ନାମରେ ଏକ ବ୍ୟକ୍ତି ଥିଲେ । ତାଙ୍କର ଅଧିକ ବୟସ ଯାଏ ପୁତ୍ର ନ ହେବାରୁ ଦେବ ଆରାଧନାରେ ସନ୍ତାନ ଲାଭ କରି ତାହାର ନାମ ଈଶ୍ୱର ଦେଲେ । ଆଉ ଈଶ୍ୱରର ଉଚିତ ସମୟରେ କୁଳୋଚିତ ରୀତିଅନୁଯାୟୀ ବିଦ୍ୟା ଶିକ୍ଷା ଦେଇ ଥିଲେ । ମଧ୍ୟ ସ୍ୱୟଂ ପର ଲୋକ ଗମନ କାଳୀନ ଈଶ୍ୱର ଧର୍ମ, ନୀତି, ଭକ୍ତି, ସ୍ୱଭାବ, ବ୍ୟବହାର ଓ ଗୁଣରେ ପ୍ରବୀଣତା ଲାଭ କରି ଥିବାର ଦେଖି ନିଜର ମହାନିଦ୍ରାକୁ ସୁଖ ନିଦ୍ରା ମଣି ଥିଲେ । ଅନନ୍ତର ଈଶ୍ୱର ପରିବାରରେ ଦିନ ଦିନ ଧର୍ମ ପିପାସା ବୃଦ୍ଧି ହେବାରୁ ସେ ଏକ ସମୟରେ କୁଳଗୁରୁଙ୍କ ସନ୍ନିଧ୍ୟକୁ ଯାଇ କହିଲେ ଭୋ ଦେବ ମୋତେ ଧର୍ମସମ୍ବନ୍ଧରେ ଦୀକ୍ଷା ଦିଅ । ତହୁଁ ଗୁରୁଦେବ ମହା ଚିନ୍ତାନ୍ୱିତ ହେବାକୁ ଲାଗିଲେ କାରଣ ସେ ନିଜକୁ ବିଦ୍ୟାଶୂନ୍ୟ ଭଟ୍ଟାଚାର୍ଯ୍ୟ ଅଟନ୍ତି ମାତ୍ର ଯଜମାନର ଅତ୍ୟଧିକ ଧର୍ମ ପିପାସାର ଆଗ୍ରହ ଦେଖି ମନେ ମନେ ସ୍ଥିର କଲେ ଯେ ଏହାକୁ ଦୀକ୍ଷା ସମ୍ବନ୍ଧେ ବହ୍ୱାଡ଼ମ୍ବର ତାଲିକା ପ୍ରଦାନ କଲେ ଏ କଷ୍ଟ ପାଇବ ନାହିଁ ଅମ୍ଭେ ମଧ୍ୟ ରକ୍ଷା ପାଇବୁଁ । ତହୁଁ ବହ୍ୱାଡ଼ମ୍ବର ତାଲିକା ପ୍ରଦାନ ପୂର୍ବକ କହିଲେ ଏ ସମସ୍ତ ଆୟୋଜନ କରି ଅମ୍ଭଙ୍କୁ ସମ୍ବାଦ ଦେଲେ ଅମ୍ଭେ ଆସି ଦୀକ୍ଷା ପ୍ରଦାନ କରିବୁଁ ମାତ୍ର ତାଲିକା ମଧ୍ୟସ୍ଥ ଏକ କାର୍ଯ୍ୟ କିମ୍ବା ଦ୍ରବ୍ୟର

ଅଭାବରେ ଉକ୍ତ କର୍ମ ହେବ ନାହିଁ । ଅନନ୍ତର ପିପାସୁ ସାଧକ ସାଧ୍ୟମତ ପ୍ରାଣ ପଣେ ଚେଷ୍ଟା କରି ସମସ୍ତ ପୂଜୋପକରଣ ଏକତ୍ର ପୂର୍ବକ ଗୁରୁଦେବଙ୍କୁ ସମ୍ବାଦ ଦେବାରେ ଗୁରୁଦେବ ଭଲ ଦିନ ନ ଥିବାରୁ କହି ସାତ ଦିନ ଅବସର ନେଇ ପରେ ବାଧ୍ୟ ହୋଇ ବିଶେଷରେ ଅର୍ଥ ଲୋଭରେ ଧୂତ ବଟୁ ପଣ୍ଡି ମୂର୍ଖ ଶିରୋମଣି ଅବସର ମଧ୍ୟରେ ଅନ୍ୟଠାରୁ ଶିକ୍ଷା କରି ଆସି ଦୃଢ଼ ନିର୍ଭରଶୀଳ ଧର୍ମ ବିଶ୍ୱାସୀ ଶିଷ୍ୟାଳୟରେ ପ୍ରବେଶ ପୂର୍ବକ ଯଥାତଥା ରୂପେ ପୂଜାଦି କାର୍ଯ୍ୟ ସମାପନ କରି ଶିଷ୍ୟକୁ ଉପଦେଶ ପ୍ରଦାନ କାଳୀନ; ଶିକ୍ଷା କରି ଆସି ଥିବା ଦୀକ୍ଷାମନ୍ତ୍ର ମନେ ନ ପଡ଼ିବାରୁ ବିଶ୍ୱାସୀ ଈଶ୍ୱର ଶ୍ରୁତିରେ ଅଜ୍ଞତା ବଶତଃ ଶଠଭାବରେ ଢେଙ୍କି ବୋଲି ମନ୍ତ୍ର ପ୍ରଦାନ କଲେ । ଅନନ୍ତର ସଶଙ୍କିତ ଚିତ୍ତରେ ଅର୍ବୈକ ଅପ୍ରୟୋଜନୀୟ ଦ୍ରବ୍ୟାଦି ଗ୍ରହଣ କରି ଅପଗର୍ବ ବିଗତ ହେବାର ଅନୁଜ୍ଞା ପ୍ରଦାନ ପୂର୍ବକ ଆଶୁ ଗୃହ ଗମନରେ ଶାନ୍ତି ଲଭିଲେ । ତହୁଁ ଈଶ୍ୱର ଈଶ୍ୱରାଧନା କରିବାକୁ ନିର୍ଦ୍ଦିଷ୍ଟ ପ୍ରଣାଳୀରେ ଗୁରୁ ଆଜ୍ଞା ପାଳନ କରି ଏକ ମନେ ଏକାସନରେ ଏକ ନାମ "ଢେଙ୍କୀ "ଢେଙ୍କୀ" ବୋଲି ଜପିବାକୁ ଲାଗିଲା । ତତ୍ପରେ କିଛି ଦିନରେ ବିଷ୍ଣୁ ଦୂତ ହେଲା ପରି ନାରଦ ବାହାନ ଢେଙ୍କୀ ବିଦଶାଳୟରୁ ଆସି ଈଶ୍ୱରାଳୟରେ ମର୍ତ୍ତ୍ୟରେ ଅବତୀର୍ଣ୍ଣ ହେଲା । ଅନନ୍ତର ଈଶ୍ୱର ଆପଣା ଇଷ୍ଟ ମନେ କରି ଉପଦେଶ ଅନୁଯାୟୀ ପୂଜା କରିବାକୁ ଲାଗିଲା । ତେଣେ ବିଶ୍ୱଭ୍ରମଣକାରୀ ନିଜ ଯାନ ଅଭାବ ଧ୍ୟାନରେ ଜାଣି ବାଧ ହୋଇ ଆସି ବାହାନ ସହିତ ପୂଜା ପାଇବାକୁ ଲାଗିଲେ ପୁଣି ବିରଞ୍ଚି, ନାରଦଙ୍କ ଅଭାବରୁ ଆସି ଈଶ୍ୱର ପୂଜ୍ୟ ମଧ୍ୟରେ ଗଣ୍ୟ ହେବାକୁ ଲାଗିଲେ । ଏ ଅନ୍ତେ ଅଧୋକ୍ଷଜ ସ୍ୱର୍ଗ ଶୂନ୍ୟ ଦେଖି ବ୍ରହ୍ମା ଆଦିଙ୍କ ତତ୍ତ୍ୱ ନେବା ଓ ସଂସାରରେ ଶିକ୍ଷା

ହେବା ମାନସରେ ବିଶ୍ୱ ଜ୍ଞାନଙ୍କ ପାଶେ ଅବତୀର୍ଣ୍ଣ ହେଲେ । ଏକ ଦିନ ଈଶ୍ୱର ପ୍ରାତଃକୃତ୍ୟାଦି ସମାପନାନ୍ତର ଆସନାଲୟକୁ ଆସି ଦେଖିଲେ ଯେ ଆଜ ଏକ ଅପୂର୍ବ ଦେବ ଉପସ୍ଥିତ ହୋଇ ସଦନ ଆଲୋକିତ କରୁ ଅଛନ୍ତି; ତାଙ୍କ ଧଟିକ ଶତ ଶତ ଚନ୍ଦ୍ର ସୂର୍ଯ୍ୟ ରଶ୍ମି-ରୁ ତେଜଃସ୍କର ଓ ସୁଶୀତଳ ବୋଧ ହେଉ ଅଛି । ଏହି ନବ-କମନୀୟ ରୂପ ଦେଖି ବିମୋହିତ ହୋଇ ଗଳବସ୍ତ୍ରରେ ବିନୟ ନମ୍ର ଓ ଲେଗ କରି କିଜର ଆଦ୍ୟ ପ୍ରଭୁ ତେଙ୍କିଠାରୁ ନାରଦ ଓ ବ୍ରହ୍ମାଙ୍କ ପରିଚୟ ପାପ୍ତି ପର ଜଗତ୍କର୍ତ୍ତାଙ୍କ ପରିଚୟ ପାଇ ସାନନ୍ଦରେ ଆପେ ଆପଣାକୁ ଭୁଲି ପୂଜା କରିବାକୁ ଲାଗିଲେ । ବିଭୁ ବ୍ରହ୍ମାଙ୍କଠାରୁ ସମସ୍ତ ଅବଗତାନନ୍ତର ଈଶ୍ୱରଙ୍କୁ ନିଦିଶବାସୀ କରିବାର ସ୍ଥିର କଲେ ପରେ ନିଷ୍ଠାସୀ ଭକ୍ତ ଈଶ୍ୱରର ସାନୁନୟ ଅନୁରୋଧରେ ଭକ୍ତା-ଧୀନ ନର ସଦୟରେ ଅଙ୍କ ଗୁରୁ ପ୍ରତିବେଶି ସହ ଈଶ୍ୱରଙ୍କୁ ସପରି-ବାରରେ ସ୍ୱଦେହରେ ଅମର ଧାମକୁ ନେଇ ଚିରକାଳ ପାଇଁ ଅମୃତାନନ୍ଦ ଭୋଗ ସହିତ ଅମରତ୍ୱ ପ୍ରଦାନ କଲେ । ଅତଏବ ଯେଉଁ ଶିଷ୍ୟ ଧର୍ମକାର୍ଯ୍ୟରେ ଗୁରୁ ଠାରୁ ଉପଦେଶ ଗ୍ରହଣ ପୂର୍ବକ ଦୃଢ଼ ବିଶ୍ୱାସରେ ଗୁରୁଭକ୍ତି ସହ ନିଜ ପ୍ରତିଜ୍ଞା ରକ୍ଷା କରି ପାର୍ଥିମଳ ପରିଣ ପ୍ରକୃତି ସହିତ ଷଡ଼୍ରିପୁ ଦମନରେ କାର୍ଯ୍ୟ କରି ପାରିବେ ସେମାନେ ଧ୍ରୁବରେ ଇହକାଳରେ ସାଧୁ ଭାବରେ ସୁଖରେ ଚଳି ପରକାଳରେ ପରମାନନ୍ଦରେ ପରମାନନ୍ଦଙ୍କୁ ଲାଭ କରି ତନ୍ମୟ ହେବେ ।

ଏକଦା ଧୃଷ୍ଟତରିବାପରେ ରାମ ଲକ୍ଷ୍ମଣ ନାମରେ ଦୁଇ ଭାଇ ଏକ-ଦିନ ଶୀତ ସମୟରେ ପାରିଧି କରିବା ମାନସରେ କ୍ରମେ ଅରଣ୍ୟରେ ପ୍ରବିଷ୍ଟ ହେଲେ । ଅନେକକ୍ଷଣ ପରୁ ଅଗ୍ରଜ ରାମ ଏକ ବ୍ୟାଘ୍ର ଧିକାର କରିବାକୁ ଓ ଅନୁଜ ଲକ୍ଷ୍ମଣ ଏକ ହରିଣ ଶିକାର କରିବାକୁ ପ୍ରବୃତ୍ତ

ହୁଅନ୍ତେ କ୍ରମେ ଅନ୍ତର ହୋଇ ଗଲେ । ଲକ୍ଷ୍ମଣ ମୃଗ ସିକାର କର ଦେଖିଲେ ଯେ ରାଇ ସଙ୍ଗରେ ନାହାଁନ୍ତି ତାହାଙ୍କୁ ଏକ ବୃକ୍ଷରେ ବାନ୍ଧି ରାମଙ୍କୁ ଅନୁସନ୍ଧାନ କରିବାକୁ ଲାଗିଲେ । କିଛିକ୍ଷଣପରେ ଦେଖିଲେ ଯେ ରାମ ଘୋର ଅରଣ୍ୟ ମଧ୍ୟରେ ଏକ ମହାବଳ ଓ ତାହାର ସନ୍ତାନ କର୍ତ୍ତୃକ ଆକ୍ରମିତ ହୋଇଅଛନ୍ତି ଏମନ୍ତ ସ୍ଥଳେ ରାମ ମହାବଳଙ୍କୁ ମାରିଲେ ମଧ୍ୟ ତାହାର ସନ୍ତାନଠାରୁ ନିସ୍ତାର ପାଇବାର ଉପାୟ ନାହିଁ । ଅର ମହାବଳର ସନ୍ତାନଙ୍କୁ ବଧ କଲେ ମଧ୍ୟ ମହାବଳ— ଠାରୁ ରକ୍ଷା ପାଇବାର ଉପାୟ ନାହିଁ । ସେମାନେ ପ୍ରାୟ ସମସ୍କନ୍ଧରେ ଅଛନ୍ତି; ଏବଂ ଏ ସମୟେ ରାମର ସାହାସ କମି ଯାଇଥିବାରୁ ସେ ପିପାସିତ ହୋଇ ଥିବାର ମୁଖଭଙ୍ଗୀରୁ ଅନୁମିତ ହେଉଅଛନ୍ତି । ଲକ୍ଷ୍ମଣ ଏ ସମସ୍ତ ଅନୁମାନଦ୍ୱାରା ଦୂରରୁ ବୁଝି ଅଉକ୍ଷଣ ଚିନ୍ତା କରି ଏକ ଆକର୍ଣ୍ଣ ପୂରିତ ସନ୍ଧାନଦ୍ୱାରା ବ୍ୟାଘ୍ରର ବକ୍ଷସ୍ଥଳ, ରାମର କର୍ଣ୍ଣ ଓ ବ୍ୟାଘ୍ର ସନ୍ତାନର ଶିର ଶାଣିତ ଶରରେ ଭେଦ କରାଇ ଦେବାରୁ ରାମ ଆକର୍ଣ୍ଣିକ ଅଘାତରେ ମୋହ ହୋଇ ପଡିଲେ ଆଉ ବ୍ୟାଘ୍ରଦ୍ୱୟ ଦେଖୁ୨ ପଞ୍ଚତ୍ୱ ପ୍ରାପ୍ତ ହେଲେ । ଏହା ଦେଖି ଲକ୍ଷ୍ମଣ ଅତି ସତ୍ୱର ସେ ଅରଣ୍ୟରୁ ଏକ ଜଳଦ ଲତା କାଟି ଜଳ ଆଣି ରାମଙ୍କୁ ଚେତନା କରାଇଲେ । ତନ୍ତୁ ଅନୁଜଠାରୁ ସମସ୍ତ ବୃତ୍ତାନ୍ତ ବୁଝି କର୍ଣ୍ଣ ଯିବା ଓ ତଜ୍ଜନିତ ଜ୍ୱାଳା ଯନ୍ତ୍ରଣା ଅନୁଭବ ନ କରି ଭ୍ରାତାଙ୍କୁ କୋଳରେ ଧରି ଆନନ୍ଦେ ନୃତ୍ୟ କରିବାକୁ ଲାଗିଲେ । ଅନନ୍ତର ଦିବାବସାନ ହୋଇ ଥିବାରୁ ଉଭୟେ କିଛି୨ ବଣ ଫଳମୂଳ ଭକ୍ଷଣ କରି ଶୀତ ଭୟରେ ବିଶେଷରେ ଅନୁଜର ନାତଲେକ୍ତି ହେତୁ ସିକାର ହରିଣଙ୍କୁ ତ୍ୟାଗ କରି ଶୀଘ୍ର୨ ଗୃହାଭିମୁଖରେ ଗମନ କରିବାକୁ ଲାଗିଲେ । କିନ୍ତୁ ରାତ୍ରି ହୋଇ ଯିବାରୁ ପଥ ଭ୍ରମରେ ବରଫ ପତିତ ସେବଣୀ ଶୈଳୋପରି

ପଦସ୍ଥ ତରୁପାର୍ଶ୍ୱସ୍ଥ ଏକ ବନମଧ୍ୟରେ ବିଶ୍ରାମ କରିବାକୁ ମାନସ କଲେ ସେତେବେଳକୁ ପଥଶ୍ରାନ୍ତ ଓ କ୍ଷୁଧାର୍ତ୍ତ ହେତୁ ବିଶ୍ରାମ ପ୍ରାର୍ଥୀ ହୋଇ ଉଭୟେ ନିଶିଯାପନର ମାନସେ ରହିଲେ । ପରେ ଅନୁଜ ଅଗ୍ରଜଙ୍କୁ କହିଲା ଭାଇ କିଅଣ ଖାଇବି ମୋତେ ବଡ଼ କ୍ଷୁଧା ହେଉଅଛି ? ଭାଇଠାରେ ଥିବା ଫଳ ମୂଳ ଦୁଇଗୋଟି ତାକୁ ଦେବାରୁ ସେ ତାହା ଖାଇ ଝର୍ଣ୍ଣର ଜଳପାନ କଲା ତହୁଁ ଶୀତରେ କ୍ରମେ ମଲା ଥରିବାରୁ ମଧ୍ୟ ଉପରୁ କାକର ଓ ବରଫ ପଡ଼ିବାରୁ ଅନୁଜ ବ୍ୟାକୁଳତା ସହ୍ୟ କରି ନ ପାରି ପୁଣି ନିଜର ଲୁଗା ତାକୁ ଘୋଡ଼ାଇ ଶେଷରେ ଅଗ୍ରଜ ସ୍ୱୟଂ ତାହା ଉପରେ-ହାକର ସହ୍ୟ କରି ଶୋଇଲା । ପରେ ବହୁକଷ୍ଟେ ରାତ୍ର ଶେଷହେବା ସମୟେ ତେଣେ ରାମ ଲକ୍ଷ୍ମଣର ତାତ ଓ ଖୁଲ୍ୟତାତ, ଏମାନଙ୍କ ଅନୁସନ୍ଧାନରେ ଶୀଘ୍ର ବିସ୍ତାଦ ସହ ସମସ୍ତ ରାତ୍ର ଖୋଜି୨ ଅତି ପ୍ରତ୍ୟୁଷରେ ଭାଗ୍ୟ କ୍ରମେ ସେହି ସ୍ଥାନକୁ ଆସି ଏମାନଙ୍କର ସମୁଦାୟ ବୃତ୍ତାନ୍ତ ଅବଗତାନନ୍ତର ଅତୀବ ଚମତ୍କୃତ ହୋଇ ଅନୁସନ୍ଧାନରେ ଲକ୍ଷ୍ମଣ ମିଳାଇ ହରଣ ନେଇ ମହାନନ୍ଦରେ ଗୃହ ଗମନ କଲେ । ଏପରି ଭ୍ରାତୃଭକ୍ତି ସଂସାରରେ ବିରଳ ହୋଇ ନ ପାରେ ସତ୍ୟ ମାତ୍ର ଏହା ନିଃସନ୍ଦେହ ଆଶ୍ଚର୍ଯ୍ୟୋତ୍ପାଦକ ଅଟଇ ।

ମହାଭାରତ କଥିତ କୁଣ୍ଡିନଗରରେ ବିଦ୍ୟାସୁନ୍ଦର ନାମରେ ହାପୃଷ୍ଟ ବା କରଣକୁଳୋଦ୍ଭବ ଏକବ୍ୟକ୍ତି ଥିଲେ । ଏ ବାଲ୍ୟକାଳରୁ ପିତୃହୀନ ହୋଇଥିବାରୁ ମାତା ଗାର୍ହସ୍ଥ୍ୟ ଧର୍ମାନୁଯାୟୀ ଘର କରଣା ଦ୍ରବ୍ୟାଦି କ୍ରମେ ବିକ୍ରୟ କରି ସନ୍ତାନର ଲାଳନ ପାଳନ ଓ ଶିକ୍ଷା ଦାନରେ ବ୍ୟସ୍ତ କରାଇ ଥିଲେ । ବିଦ୍ୟାସୁନ୍ଦର ବୟଃ ପ୍ରାପ୍ତ ହୋଇ କୁଣ୍ଡିନନଗରବାସୀ ପଣ୍ଡିତଙ୍କ ସମୀପରେ, ମାସିକ ପାଞ୍ଚଟଙ୍କା ବେତନରେ ନିଯୁକ୍ତ ରହିଲେ । ଏ ବଡ଼ ଧାର୍ମିକ ଓ ସୁଶୀଳ ଏବ ଭଦ୍ର ଓ ପରେ

ପ୍ରକାଶ ଅଟନ୍ତି । ଏହାଙ୍କ ସୁଗୁଣରେ ରାଜା ଓ ପ୍ରଜା ସମସ୍ତେ ସନ୍ତୁଷ୍ଟ ଥାଆନ୍ତି । ଦିନକରେ ରାଜା ତାଙ୍କ କାର୍ଯ୍ୟରେ ବିଶେଷ ଖୁସି ହୋଇ ତାହାଙ୍କ ବେତନ ବୃଦ୍ଧି କରିଦେବା ସକାଶେ ତାହାଙ୍କୁ କହିଲେ ବାବୁ ବିଦ୍ୟାସୁନ୍ଦର ତୁମ୍ଭର ଏ ପାଞ୍ଚଟଙ୍କାରେ ଚଳିବା ବଡ଼ କଷ୍ଟ ହେଉ ଥିବ । ଯଦି ତ ଆମ୍ଭ ଆସୁ ଅଧିକ କୁହେଁ ତଥାପି ତୁମ୍ଭ ଚଳିବା ବିଷୟ ଭାବିଲେ ଆମ୍ଭେ ଚମତ୍କୃତ ହେଉଁ ; କାରଣ ତୁମ୍ଭର ମାତା, ସ୍ତ୍ରୀ ଓ ପୁତ୍ର କନ୍ୟାଆଦିଙ୍କୁ ଏତେ କମରେ ଚଳାଇବା ବଡ ଆଶ୍ଚର୍ଯ୍ୟ ବିଷୟ ହୋଇଅଛି । ହେଉ କି କି ପରି ଏ ଟଙ୍କାରେ ତୁମ୍ଭେମାନେ ଚଳ ତାହା ଭାବି ଠିକ୍ କରିପାରୁ ନାହିଁ ।

ବିଦ୍ୟା—ମହାରାଜ ଯେବେ ସନ୍ଦିଗ୍ଧ ହୋଇଅଛନ୍ତି ମୋହର ହିସାବ ଶୁଣନ୍ତୁ । ମୁଁ ଏକଟଙ୍କା କରଜ ପରିଶୋଧ କରେଁ, ଏକଟଙ୍କା କରଜ ଦିଏଁ, ଏକଟଙ୍କା ଜମା ରଖେଁ, ଏକଟଙ୍କା ପାଣିକି ପକାଏଁ ଦିଏଁ ଆଉ ବାକୀ ଏକଟଙ୍କାରେ ଯାହା ହୁଏ ଖାଏଁ ।

ରାଜା—ମୁଁ ଚିନ୍ତା କରୁଅଛି ତୁମ୍ଭଙ୍କୁ ଅନାଟନ ହୁଏ ବୋଲି ? ତୁମ୍ଭେ ଅଥଚ ନା ଏକଟଙ୍କା ପାଣିକି ପକାଇ ଦିଅ ଓ ଏକଟଙ୍କା ଜମା ରଖ ! ଏ ସବୁ କରଣୀଯ୍ୟ ହିସାବ କହ ବୁଝି ପାରିଲି ନାହିଁ ମୋତେ ପରିଷ୍କାରରୂପେ ବୁଝାଇ ବୋଲ ।

ବିଦ୍ୟା—ମହାରାଜ କରଜ ପରିଶୋଧ କରିବା ଅର୍ଥାତ୍ କର୍ତ୍ତୃପକ୍ଷୀ- ଯ୍ଙ୍କର ବ୍ୟୟ, କରଜ ଦେବା ଅର୍ଥାତ୍ ପୁତ୍ର କନ୍ୟାଙ୍କ ବ୍ୟୟ, ଜମା ରଖିବା ଅର୍ଥାତ୍ ଯେଉଁମାନଙ୍କର ଅଭାବ ସେମାନଙ୍କ ଦାନ କରିଦେବା, ପାଣିକୁ ପକାଇ ଦେବା ଅର୍ଥାତ୍ ବାଜେ ସ୍ତ୍ରୀଙ୍କ ବ୍ୟୟ ଆଉ ବାକୀ ଗୋଟିଏ ଟଙ୍କାର ମୋହ ଉଦରରେ ଯାଏ । ସବୁ ଦିନକଙ୍କୁ ଚଳାଇବାକୁ ମୋହର କୌଣସି

ଚନ୍ତା ନାହିଁ । ଅନନ୍ତର ରାଜା ଅନ୍ତର ସୁଖୀ ହୋଇ ତାହା-ଙ୍କର ବେତନ ବଢ଼ାଇ ଦେବାରୁ ବିଦ୍ୟାଧର ପୂର୍ବପର ହିସା-ବରେ ବନ୍ଦୋବସ୍ତ କରି ସମସ୍ତ କାର୍ଯ୍ୟ ସମାଧା ପୂର୍ବକ ଦିନ୨ ଈଶ୍ୱର ନିଷ୍ଠରେ ଦୀନବନ୍ଧୁଙ୍କ ଉପାସନା ବଢ଼ାଇବାକୁ ଲାଗିଲେ ଏପରି ସମସ୍ତ ବିଷୟ ନିୟମିତରେ ଚଳାଇ ଶତାଧିକ ବର୍ଷରେ ପରଲୋକ ଗମନ କାଳେ ରାଜାଙ୍କଠାରେ ବିଶ୍ୱାସୀ ଓ ରାଜଭକ୍ତ ବୋଲି ପ୍ରଖ୍ୟାତ ଥିବାରୁ ପୁତ୍ରଙ୍କୁ ନିଜ କାର୍ଯ୍ୟରେ ନିଯୁକ୍ତ କରାଇ ଗଲେ । ଏହି ବଂଶ ଉତ୍କଳ ଓ ବଙ୍ଗରେ ଭକ୍ତବଂଶ ବୋଲି ପ୍ରଖ୍ୟାତ । କଥିତ ଅଛି ଯେ ଏହି ବଂଶୀୟ ଭକ୍ତ ପ୍ରବର ବନ୍ଧୁ ମହାନ୍ତିଙ୍କ ଖାଇବାର ଅଭାବ ହେବାରୁ ଶ୍ରୀ ଶ୍ରୀ ଜଗନ୍ନାଥଜୀଉ ସ୍ୱୟଂ ସ୍ୱର୍ଣ୍ଣ ଥାଳରେ ଏକ ଥାଳି ଖେଚଡ଼ି ଭୋଗ ନେଇ ଦେଇଥିଲେ । ପରଦିବସ ଦେବଙ୍କ ଥାଳୀ ନ ମିଳି-ବାରୁ ଗୋଟିଏ ଯାଇଥିବାର ଗୋଳ ହେଉ ଅଛି ଏମନ୍ତ ସମୟରେ ବନ୍ଧୁମହାନ୍ତିଠାରେ ଥିବାର ପ୍ରକାଶ ପାଇବାରୁ ଦେବ ମାର୍-ଫତଦାର ପୁଣ୍ୟ ମହାରାଜା ଭକ୍ତ ବନ୍ଧୁମହାନ୍ତିଙ୍କୁ ପଚାରିବାରୁ ସେ କହିଲେ କି କିଏ ରାତ୍ରରେ ମୋ ନାମ ଧରି ଏକ ଖେଚେଡ଼ି ଥାଳୀ ଦେଇ ଗଲେ ପୁନରପି ମୁଁ ଖାଇସାରି ଡ଼ାକିବାରୁ କେହି ନେଲେ ନାହିଁ । ମହାରାଜ ମୋହର ଦୀନବନ୍ଧୁ ସାକ୍ଷି ଅଟନ୍ତି ।

ରାଜା — ଦେଖ ବନ୍ଧୁମହାନ୍ତି ତୁମ୍ଭେ ଭକ୍ତ, ସାଧୁ ଓ ଗରିବ ମଧ୍ୟ ଅନେକ ଦିନୁ ଶ୍ରୀ ଜୀଉଙ୍କ ସିଂହଦ୍ୱାରରେ ଥିବାର ଆମ୍ଭେ ଶୁଣି ଅଛୁଁ କିନ୍ତୁ ଦେବଙ୍କର ସ୍ୱର୍ଣ୍ଣ ଥାଳୀ କି ପ୍ରକାର ତୁମ୍ଭ ନିକଟକୁ ଗଲା ପ୍ରମାଣ ନ ଦେବା ହେତୁ ଏ ବିଶେଷରେ ସେହି ଅପରାଧରୁ ସମ୍ପ୍ରତି ତୁମ୍ଭଙ୍କୁ କାରାଗାରକୁ ପ୍ରେରଣ କରି ଯାଉଅଛି ।

ବନ୍ଧୁ— ହେ ଦୀନବନ୍ଧୁ ତୁ ସବୁ ଜାଣୁ ତୋ ଅଜ୍ଞାତରେ ବ୍ରହ୍ମାଣ୍ଡରେ କୌଣସି ଏକ କାର୍ଯ୍ୟ ଘଟଇ ନାହିଁ । ଏବେ ଏ ଦୁଃଖପୂର୍ଣ୍ଣ ସଙ୍କଟରୁ ଉଦ୍ଧାର କର । ନୋହିଲେ ତୋହର ନାମରେ ଏ ପ୍ରାଣ ଯିବ । ମୁଁ କାଲି ମରଣ ଗ୍ରାସ ଖାଇଅଛି, ସେଥି ନିମନ୍ତେ ଅମୃତ ପରି ମଧୁର ଲାଗୁଥିଲା; ବନ୍ଧୁ ଏହିପ୍ରକାର କହୁଁ ୨ କାନ୍ଦି ୨ କାରାଗାରକୁ ପ୍ରେରିତ ହେଲେ ।

ଜଗନ୍ନାଥ— ରାଜାଙ୍କୁ ସ୍ୱପ୍ନାଦେଶ ଦେଲେ କି ତୁ ରାତ୍ର ଶେଷରେ ମୋହର ଭକ୍ତ ବନ୍ଧୁକୁ କାରାମୁକ୍ତ କରଦେବୁ । ମଧ୍ୟ ତାହାର ପ୍ରାତ୍ୟହିକ ଆହାରର ସୁବନ୍ଦୋବସ୍ତ କରଦେବୁ । ଆଉ ତାହାର ଖାଇବାର ନ ଥିବାରୁ ଆମ୍ଭେ ସ୍ୱର୍ଣ୍ଣ ଥାଳୀରେ ତାକୁ ଖେଚଡ଼ି ଦେଇଥିଲୁଁ । ଏବେ ଏହା ସତ୍ୟ ହେଉଛି କି ନାହିଁ ଏହା କହି ରାଜାଙ୍କ ହସ୍ତରେ ଏକ କଳାଦାଗ ଦେଲେ ଯେ ତୁ ଏ ସମସ୍ତ କାର୍ଯ୍ୟ କରିସାରିବା ଯାଏ ବିଶେଷରେ ଭକ୍ତକୁ ସୁଖୀ କରିବା ଯାଏ ଏ ଦାଗ ସ୍ମାରକ ସ୍ୱରୂପ ରହିଲା ।

ରାଜା— ପ୍ରତ୍ୟୁଷରୁ ଉଠି ନିତ୍ୟ ନୈମିତ୍ତିକ କର୍ମମାନ କରିବାକୁ ଲାଗିଲେ ପରେ କଳାଦାଗ ଦେଖି ମନେ ପଡିବାରୁ ଦେବଙ୍କ ଆଦେଶାନୁସାରେ ବନ୍ଧୁ ଭକ୍ତକୁ କାରା ମୁକ୍ତ କରି ତାହାର ଆହାରାଦିର ସୁବନ୍ଦୋବସ୍ତ କରିଦେଲେ । ସେହି ଦୀନବନ୍ଧୁ କେବଳ ଦେବକାର୍ଯ୍ୟ ଓ ସାଧାରଣଙ୍କୁ ସତ୍‌ଶିକ୍ଷା ଦେବାରେ ଦିନ ଯାପନ କରୁଥିଲେ । ଏହାଙ୍କ ଉପଦେଶରୁ ଶାଲବେଗ ଆଦି ମୁସଲମାନମାନେ ହିନ୍ଦୁ ଭକ୍ତଙ୍କ ମଧ୍ୟରେ ଗଣ୍ୟ ହେଲେ । ସେହି ସମୟେ ତେଲଙ୍ଗା, ବଙ୍ଗାଳ ଓ ପଶ୍ଚିମା ଉତ୍କଳ ରାଜାଶ୍ରୟ ନେଇ ଉପନିବେଶ ସ୍ଥାପନ କରିବାର ପ୍ରମାଣିତ । କାଳ

କ୍ରମେ ଏହାଙ୍କ ବଂଶୀୟ ବିଶାରଦ ମହାନ୍ତି ନାମରେ ଏକ ବ୍ୟକ୍ତି ବିଗତ ସନ ୧୫୬୮ ସାଲରେ ( କଳାପାହାଡ଼ ଦାରୁ-ବ୍ରହ୍ମଙ୍କୁ ନେଇ ଗଙ୍ଗାକୂଳସ୍ଥ ଚିତାଗ୍ନିରେ ନିକ୍ଷେପ କରିବାରୁ) ଭସ୍ମଧୃସ୍ତ ବ୍ରହ୍ମମୂର୍ତ୍ତିକୁ କୌଶଳରେ ଆଣି କୁଜଙ୍ଗ ରାଜାଙ୍କଦ୍ୱାରା ପୁନଃ ପ୍ରତିଷ୍ଠା କରାଇଅଛନ୍ତି । ଅଧୁନା ସେହି ବଂଶୀୟମାନେ ଉତ୍କଳର କେତେକ ସ୍ଥାନରେ ଥିବାର ପ୍ରମାଣ ମିଳେ । ମଧ୍ୟ ସେମାନେ ପରମାର୍ଥୀ ଓ ମନ୍ଦ ଆହାର ପାନରୁ ବିରତ ଥିବାର ଦେଖାଯାଏ । ଅନନ୍ତର ସେହି ବଂଶରୁ ସମସ୍ତ ସମୟରେ କେହି ନୈବେଦ୍ୟ ହେବାର ମଧ୍ୟ ପ୍ରମାଣ ମିଳଇ । ବିଗତ ସନ ୧୨୧୬ ଖ୍ରୀଷ୍ଟାବ୍ଦରେ ବଙ୍ଗଳାର ରାଜା ଲକ୍ଷ୍ମଣସେନ ବାଦସା-ହାଙ୍କ ଭୟରେ ଆସି ଉତ୍କଳ ରାଜାଙ୍କ ଆଶ୍ରୟ ଗ୍ରହଣ କରି-ଥିଲେ । ପରେ ଉତ୍କଳ ରାଜାଙ୍କ ସୁପାର୍ଶରେ ସୁଖରେ ସ୍ୱଦେଶକୁ ଫେରି ଯିବା ସମୟେ ଆପଣାର ରାଜକାର୍ଯ୍ୟ ସୁଚାରୁରୂପେ ଚଳାଇବା ନିମନ୍ତେ କେତେକ ସଦ୍‌ଲୋକଙ୍କୁ ନେଇ ଯାଇ-ଥିଲେ ସେହି ଦିନୁ ସେମାନେ ବଙ୍ଗଦେଶରେ ବାସ କରି କ୍ରମେ ବଙ୍ଗ କାୟସ୍ଥ ଶ୍ରେଣୀଭୁକ୍ତ ହୋଇଥିବାର ପ୍ରମାଣ ମିଳେ । ଏହି ସମସ୍ତ କାରଣ ମାନଙ୍କରୁ ବଙ୍ଗସ୍ଥ ଚଣ୍ଡିଦାସ ପ୍ରଭୃତି ମହାତ୍ମାମାନେ ଛେପ ଓ ଟାଙ୍ଗିଆ ଆଦି ଓଡ଼ିଆ ଶବ୍ଦ-ମାନ ବ୍ୟବହାର କରି ଗ୍ରନ୍ଥ ଲେଖିଥିବାର ଦେଖାଯାଏ । ଅତଏବ ଏହିପରି ସତ୍, ଧାର୍ମିକ, ପରୋପକାରୀ, ଜ୍ଞାନୀ ଓ ସ୍ୱାର୍ଥତ୍ୟାଗୀ ଏବଂ ଶାସ୍ତ୍ର ଓ ସମଦର୍ଶୀ ମହାତ୍ମାମାନଙ୍କୁ ଯେଉଁ-ମାନେ ସମାଦର କର୍ମା କାୟମନୋବାକ୍ୟରେ ଭକ୍ତି ନ କରନ୍ତି ତେବେ ସେମାନେ ଯେ ହୃଦୟବାନ୍ ଏହା କେମନ୍ତ ପ୍ରମାଣିତ ହୋଇ ପାରିବ ।

ସପ୍ତମାତା ମଧ୍ୟରେ ଅବନୀ, ଜୀବୀଗଣର ଗୋଟିଏ ମାତା ସ୍ୱରୂପିଣୀ । ଏହା ବୋଲି ଯେ ମାଟିକୁ ଭକ୍ତି କରିବ କିମ୍ବା ବନ୍ୟ ଜାତିମାନଙ୍କ ସଦୃଶ ଭୌତିକ ପଦାର୍ଥମାନଙ୍କର ମହାତ୍ମ୍ୟ ଦେଖି ଭୂମଣ୍ଡଳରେ ସେ-ମାନଙ୍କୁ ପୂଜା କରିବ ତାହା ନୁହେ ମଧ୍ୟ ଏହା ଜନବଂଶ ଓ ବଂଶ ଶତାଦିରେ ଯେ କୌଣସି ଗୋଟିଏ କାର୍ଯ୍ୟ ପୂର୍ବ ଉନ୍ନତ ସମୟ ପର ବିଜ୍ଞାନ ବହୀନରେ ପ୍ରମାଣିତ ହୋଇ ପାରିବ ନାହିଁ । ଏ ସମୟରେ ଅନ୍ଧ ବିଶ୍ୱାସରେ ଅନ୍ଧାରରେ ଟେକା ପକାଇଲା ପର ବୈଜ୍ଞାନିକ ଓ ଦାର୍ଶନିକ କଦାପି କରିବାକୁ ଦେବେ ନାହିଁ । ଅତଏବ ଇ-ଠ କାର୍ଯ୍ୟ କରି ଶିକ୍ଷିତ ସମାଜରେ ପ୍ରଶଂସା ନେବା ସୁଦୂର ପରାହତ । ତେବେ ପଙ୍କ ସରସୀରେ ପଙ୍କଜ ଶୋଭା ପାଇଲା ପରି ଏ ଜଗତର ମାଟି ଶରୀର-ରେ ଯାହାଙ୍କ ଦିବ୍ୟ ଆତ୍ମା ମଙ୍ଗଳମୟ ବିଭୂଙ୍କ ସଦୟାରୁ ନିର୍ମଳ ସେହି ମାନଙ୍କୁ ସମାଦର କରିପାର ଆଉ ସେହି ସବୁ ଧର୍ମବୀର ଆଦିଙ୍କ ଜୀବନୀ ପାଠ କରି ସତ୍‌ଶିକ୍ଷା ଲାଭ କରିବା ସର୍ବତୋଭାବେ ବିଧେୟ ଏବଂ ସମସ୍ତ ଜୀବଗଣଙ୍କୁ ଆତ୍ମବତ୍ ମଣିବା କର୍ତ୍ତବ୍ୟ ପରାୟଣତାର କର୍ମ; ମଧ୍ୟ ଜଗନ୍ନିୟନ୍ତାଙ୍କୁ ବିଶ୍ୱାସ କରି ସମସ୍ତ ସତ୍‌କାର୍ଯ୍ୟମାନ ଉସାରେ ସାଧନ କରିବାକୁ ଚେଷ୍ଟା କରିବା ଆଦି କାର୍ଯ୍ୟମାନ କରିବା ନାମ ପୃଥ୍ୱୀଭକ୍ତି ଅର୍ଥାତ ଭୂମୃର କାର୍ଯ୍ୟ ଏପରି ହେବା ଉଚିତ ଯେ ଯେପରି ପୃଥିବୀର ସମସ୍ତ ପରମାଣୁ ଭୂମୃର ସମସ୍ତ କାର୍ଯ୍ୟରେ ସନ୍ତୁଷ୍ଟ ହୋଇପାରେ ତେବେ ଭୂମ୍ୱେ ସମସ୍ତ ପୃଥିବୀକୁ ଭଲ ବାସିବାର ସତତ ଭୂମୃର ପ୍ରତିକାର୍ଯ୍ୟଦ୍ୱାରା ପ୍ରତିଫଳିତ ହେବ । ହାୟ ହାୟ ! ଏପରି ଯେବେ ସୁଖର ସଂସାର ହେବ ତେବେ ଅବନୀସ୍ଥ ଜୀବଗଣ ଆଉ ନାହିଁକି ସ୍ୱର୍ଗ ଯିବା ନିମନ୍ତେ ନାନାବିଧ ଉପାୟରେ ମାନସ ବଳାଇବେ । ମଧ୍ୟ ଭୂମ୍ୱେ ଅର୍ଥାତ୍ ଯେଉଁମାନେ ସର୍ବ ପ୍ରଥମ ଏ ପ୍ରକାର ବ୍ୟବହାର କରିବେ

ସେମାନେ ଯେ ମର୍ତ୍ତ୍ୟଦେବତାରୂପ ପୂଜା ନ ପାଇ କେବଳ ଯେ ଚରଦନପାଇଁ କୁକ୍ଷିମ୍ଭର ସ୍ୱାର୍ଥପର ମାନେ କବାଟକଳା ତାଙ୍କୁପଥ୍ୟ ଅବଦ୍ଧନନାଳ ଭୋଗ କରିବେ ଏହା କଦାପି ସମ୍ଭବପର ନୁହେ । ଅତ ଏବ ଈସାପ୍ରୀତ ଓ ଈସାଭକ୍ତି ପ୍ରାଣପଣେ ସାଧନ କରିବା ପ୍ରତ୍ୟେକ ବ୍ୟକ୍ତିଙ୍କର ସର୍ବତୋଭାବେ ବିଧେୟ । ଏହା ବୋଲି ଯେ ଯୁଦ୍ଧରେ ଅସ୍ତ୍ର ଧରିବ ନାହିଁ କିମ୍ବା ଦେହରେ ଅଗ୍ନି ପଡିଲେ ଝାଡିଦେବ ନାହିଁ, ଅଉ ମଣ୍ଡଳେଶ୍ୱରଙ୍କ ସଦିଚ୍ଛାରେ ଭୂମ୍ୟଚ୍ଛା ମିଳାଇ ସର୍ବସ୍ୱାନ୍ତ ହେବ ନାହିଁ; ତାହାହେଲେ ସଂସାରଅରଣ୍ୟରେ ପରିଣତ ହେବାକୁ ଅଉ ବାକି ନାହିଁକି ରହିବ ମଧ୍ୟ ନଶ୍ୱର ଶାନ୍ତ ଧାର୍ମ୍ମିକମାନଙ୍କର ଧର୍ମ୍ମରକ୍ଷା କପର ହେବ । ଏ ସମସ୍ତ ବିଷୟର ଯାହା କଲେ ଭୂମ୍ଭ ଜୀବନ ସହିତ ସଂସାରର ଭବିଷ୍ୟତ ଜୀବନର ଉପକାର ହେବ ତାହା ଛଡ଼ି ଧର୍ମ୍ମରକ୍ଷା କର ସାଧୁଭାବରେ ସର୍ବତୋଭାବେ ପାଳନୀୟ । ଦେଖ ସତ୍ୟ କହିବା ଉଚିତ ଏହାବୋଲି ଦୃଢ଼ବ୍ରତ ତ୍ୟାଗ କରିବା ଉଚିତ ନୁହେ । ଅଉ ପରୋପକାରୀ ହେବା ଉଚିତ । ଏହାବୋଲି ନଜର ସର୍ବସ୍ୱ ନଷ୍ଟକରି ଶେଷରେ ଶରୀର ପର୍ଯ୍ୟନ୍ତ ନଷ୍ଟକରିବା ଅବିଧେୟ; ମଧ୍ୟ ଅଉନ୍ନମ ହେବା ଉଚିତ ଏହାବୋଲି ଆତ୍ମସ୍ୱଜନ ନଷ୍ଟ କରିବା ଉଚିତ ନୁହେ; ଏ ସମସ୍ତ ସ୍ଥଳରେ ସାଧୁବାକ୍ୟମାନ ସାଧୁଭାବରେ କାର୍ଯ୍ୟ କରିବା ବିଧି କିନ୍ତୁ ଏପରି ଯେବେ ସଂସାରର କୌଣସି କାର୍ଯ୍ୟ ଉପସ୍ଥିତ ହୁଏ ଅର୍ଥାତ୍ ସେହି କାର୍ଯ୍ୟଦ୍ୱାରା ସମସ୍ତ ସଂସାର ଏକ ଉପାସ୍ୟ ଦେବଙ୍କୁ ପୂଜା କରିବେ କିମ୍ବା ସମସ୍ତେ କୌଣସି ଏକ ଭାଷାରେ କଥା କହିବେ ଅବା ସମ୍ମିଳିତ ରାଜଶକ୍ତିପର କୌଣସି ଶକ୍ତି ଜନ୍ମିବ ଅଥବା ସମସ୍ତେ କର୍ତ୍ତବ୍ୟ ପରାୟଣ ହେବେ । ସେପରିସ୍ଥଳେ ନିଜର ସମସ୍ତ ବ୍ୟୟରେ ଯେବେ ସାଧନ ନ ହୋଇ ଭୂମ୍ଭର ସର୍ବଶ୍ରେଷ୍ଠ ଧନ ବ୍ୟୟ କରିବାକୁ

ନିତାନ୍ତ ପ୍ରୟୋଜନ ହୁଏ ତେବେ ସେପରି ସ୍ଥଳେ ବିଶେଷ ବିଶ୍ୱର ପ୍ରତିଜ୍ଞା ରକ୍ଷା କରିବା ସର୍ବତୋଭାବେ ଉଚିତ ହୋଇପାରେ । ଆଉ ଦେଖ ୟୁରୋପର ଅନ୍ତଃପାତି ଫ୍ରାନସ ଦେଶରେ ବିଗତ ସାଧାରଣ ତନ୍ତ୍ର ଶାସନପ୍ରଣାଳୀର ଆରମ୍ଭ ସମୟେ ଭୁମୂଳ ଗୋଲଯୋଗ ଯୋଗେ ରାଷ୍ଟ୍ର ବିପ୍ଲବ ପ୍ରାୟ ଘଟିଥିଲା ତତ୍କାଳେ ସାଧାରଣତନ୍ତ୍ର ପୃଷ୍ଠ ପୋଷକଦଳ ନିତାନ୍ତ କିଂକର୍ତ୍ତବ୍ୟ ବିମୂଢ଼ ହୋଇଥିଲେ । ଏମନ୍ତ ସମୟେ ଗୋଟିଏ ବର୍ଷୀୟାନ୍ ବିଦ୍ୟାବତୀ ବୃଦ୍ଧିମତୀ ନାମ୍ନୀ ଅସି ତେଜପରିପୂରିତ ଅଗ୍ନିମୟ ବାକ୍ୟାବଳୀଦ୍ୱାରା ଚିରୁତ୍ସାହୀ ସଭାସଦ୍ ବ୍ୟକ୍ତିଗଣଙ୍କୁ ଉତ୍ସାହ ଦେବ ସମୟେ ଦେଖିଲେ ସାଧାରଣତନ୍ତ୍ରପକ୍ଷୀୟ ବ୍ୟକ୍ତିଗଣଙ୍କର ସାହାସ ପରି-ବର୍ତ୍ତରେ କ୍ରମେ ଆଶଙ୍କା ବଢୁଅଛି ତହୁଁ ସେ ଦେବୀରୂପା ମନସ୍ୱିନୀ-ରମଣୀ ସେମାନଙ୍କୁ ପ୍ରବୋଧ ଦେଇଗଲେ କି ମୁଁ ଫେରିଆସିବାଯାଏ ତୁମ୍ଭେମାନେ ଏହି ଶାସନପ୍ରଣାଳୀ ବଜାଏ ରଖିଥାଅ; ତହୁଁ ସେ ରମଣୀ ଗୃହକୁ ଯାଇ ଖଣ୍ଡିଏ ଉତ୍ସାହପୂର୍ଣ୍ଣ ତତ୍କାଳୀନ ଉପଯୋଗୀ ଲିପି ସେମାନଙ୍କୁ ପ୍ରଦାନପୂର୍ବକ ଅଗ୍ରଗମନ କରି ସର୍ବସାଧାରଣଙ୍କ ଉପକାର ନିମନ୍ତେ ସମୁଦ୍ରରେ ନିଜ ଜୀବନ ଅର୍ପଣ କଲେ । ଏ ଆକସ୍ମିକ ବାର୍ତ୍ତା ଫ୍ରାନ୍ସର ସମସ୍ତ ସ୍ଥାନରେ ପ୍ରଚରିତ ହେବାରୁ ଦଲ ୨ ଲୋକ ଆସି ସାଧାରଣ ତନ୍ତ୍ରର ପୃଷ୍ଠପୂରକ ସ୍ୱରୂପ ଯୋଗ ଦେବାକୁ ଲାଗିଲେ । ଅନନ୍ତର ନାନା ଗୋଲମାଲପର ସେହି ଚିରସ୍ମରଣୀୟା ସୁଶିକ୍ଷିତା ଉଦ୍ଦେଶ୍ୟତତ୍ପରା ସେ ନାରୀଙ୍କ ପ୍ରତିଜ୍ଞାରୁ ଫ୍ରାନ୍ସର ସାଧାରଣତନ୍ତ୍ର ଶାସନ ପ୍ରଣାଳୀର ମୂଳଭିତ୍ତି ଦୃଢ଼ୀଭୂତ ହେଲା । ଅନନ୍ତର ଦେଖ ମହାତ୍ମା ଶ୍ରୀରାମ, ଶ୍ରୀକୃଷ୍ଣ, ବୁଦ୍ଧଦେବ, ଯିଶୁ ଓ ମହମ୍ମଦ ଆଦି କିପରି ସମସ୍ତ ଲୋକମାନଙ୍କ ସୁଖ ନିମନ୍ତେ ଅବନୀର ମୋହନୀମାୟାରେ ନ ପଡି କେମନ୍ତ ସମସ୍ତ ସ୍ୱାର୍ଥ ତ୍ୟାଗପୂର୍ବକ ରସାରେ ସମସ୍ତଙ୍କର ମାୟାମୋହ

ବିନାଶକାରୀ ହେତୁ, ପରଚିତ ଓ ଚିରସ୍ମରଣୀୟ ହୋଇଅଛନ୍ତି । ଏହି ପରି ଧର୍ମବୀର ଓ କର୍ମବୀର ମହାତ୍ମାମାନଙ୍କର ଜୀବନୀ ପାଠ କରିବା ଯେ କେତେଦୂର ଉପାଦେୟ ତାହା ପ୍ରତ୍ୟେକ ହୃଦୟବାନ୍ ବୁଦ୍ଧିମାନ୍ ଭକ୍ତଗଣ ସହଜେ ନିଜ ଉଦାର ଓ ଅଚିନ୍ତନୀୟ ଅସାଧାରଣ ପ୍ରତିଭା ଦ୍ୱାରା ହୃଦୟଙ୍ଗମ କରି କାର୍ଯ୍ୟରେ ପରିଣତ କରିବାହିଁ ଅବନୀତକ୍ତି ଅଟେ ।

ବ୍ରହ୍ମାଣ୍ଡର ମଧ୍ୟବିନ୍ଦୁ ଉଜ୍ଜ୍ୱଳ ରଶ୍ମିରୂପ ସର୍ବ ନିୟନ୍ତା, ସର୍ବ ଶକ୍ତିମାନ୍, ସର୍ବ ସୁଖଦାତା, ଆନନ୍ଦରୂପ, ପ୍ରେମରୂପ ବାସନା ପରି ଘ୍ରାଣେନ୍ଦ୍ରିୟ ପ୍ରତ୍ୟକ୍ଷୀଭୂତ, ବେଦ ପରି ଶ୍ରବଣେନ୍ଦ୍ରିୟ ପ୍ରତ୍ୟକ୍ଷୀଭୂତ ଆସ୍ୱାଦନ ଜ୍ଞାନରୂପ ରସନେନ୍ଦ୍ରିୟ ପ୍ରତ୍ୟକ୍ଷୀଭୂତ ହୋଇ ଦର୍ଶନ ଓ ସ୍ପର୍ଶ-ନେନ୍ଦ୍ରିୟ ପ୍ରତ୍ୟକ୍ଷୀଭୂତ ହୁଅନ୍ତି, ତଥାପି ସେ ନିର୍ବିକାର, ନିରବୟବ-ଓ ସତତ ନିର୍ଲିପ୍ତ ଭାବରେ ବିଶ୍ୱ ପ୍ରତି ପରମାଣୁର ପ୍ରତି ମୋ ମହାନ୍, ରୂପରେ ଅବିନାଶୀ ସତ୍ତା ସ୍ୱରୂପ ବିରାଜିତ । ସମସ୍ତ ଜଗତର ସ୍ଥିର ବା ଅଂଶକ ତାହାଙ୍କୁ ସ୍ପର୍ଶ କରି ପାରନ୍ତି ନାହିଁ । ସେ ଅଛନ୍ତି ଏହେତୁ ଜଗତ ଅଛି ଓ ସୁଖ ଦୁଃଖ ବହୁ ଅଛି, ସେ ନ ଥିଲେ ଯେ ଜଗତର ପରମାଣୁ କିଛି କମିଯିବ ଅଥବା ଜୀବଗଣ ଅଭାବରେ ଜଗତର କିଛି କ୍ଷତିବୃଦ୍ଧି ହେବ ଏତାଦୃଶାପି ବୈଜ୍ଞାନିକ ଓ ତାନ୍ତ୍ରିକମାନଙ୍କ ମତରେ ନୁହେ ତେବେ ତାହାଙ୍କ ଅଭାବରେ ଜଗତ ପ୍ରତି ଓ ଶକ୍ତିହୀନ ଏଣୁ କେନ୍ଦ୍ରଶୂନ୍ୟ ନିର୍ଜୀବ ଓ ଶବତୁଲ୍ୟ କୌଣସି ପରମାଣୁ କ୍ଷତି ନ କରି ଯାହା ପ୍ରକୃତ ପଞ୍ଚପଦାର୍ଥ ରୂପରେ ଅବସ୍ଥମାନ କାଳ ଗ୍ରଳିତ ନ ହୋଇ କେବଳ ଜଡ଼ରୂପରେ ଚାରିଦେଶରେ ନିପତିତ ହେବ । ଏ ବିଶ୍ୱ ବ୍ରହ୍ମାଣ୍ଡର ସମସ୍ତ ଲୀଳା କେବଳ ବିଶ୍ୱପ୍ରାଣିଙ୍କର ନିଃସ୍ୱାର୍ଥ ପ୍ରୀତିପୂର୍ଣ୍ଣ ପ୍ରେମଲୀଳା ଭିନ୍ନ ଅପର କିଛି ନୁହେ । ସେ ଶାନ୍ତିମୟ ଜୀବ ତାଙ୍କର ସତ୍ତାରେ

ଜୀବତ୍ୱ ପ୍ରାପ୍ତ ହୋଇଅଛନ୍ତି ପୁନଶ୍ଚ ତାଙ୍କୁ ନ ପାଇ ଅଶାନ୍ତି ଭୋଗ କରେ ମାତ୍ର ତାଙ୍କୁ ପ୍ରାପ୍ତ ହେଲେ ନିତ୍ୟ ସୁଧାଶାନ୍ତି ଭୋଗରେ ଚିର ସୁଖୀ ହୁଏ । ଯେବେକର ଜଗତର ଜଳରାଶି ସମୁଦ୍ରାଦି ନାନା ସ୍ଥାନରୁ ବାଷ୍ପା-କାରେ ମେଘ ରୂପରେ ପରିଣତ ହୁଏ ପୁନଶ୍ଚ ଆସାର ଧାରାରେ ଅବ-ନୀକୁ ଆସି ସ୍ୱନାମ ଗୁଣ ପାସୋର ମହାସମୁଦ୍ର ସଙ୍ଗେ ମିଳିତ ହୋଇ ଚରିତାର୍ଥ ହୁଏ । ସେହିପରି ଜୀବକୁଳ ତାଙ୍କର ଅବିଚ୍ଛିନ୍ନ ବାସନା ସୂତ୍ରର ଅବଲମ୍ବନରେ ଅବନୀକୁ ଆସି ଜଡ଼ଯୁକ୍ତ ଯୋଗେ ମଳୀଭୂତ ହୋଇଥାଏ ସତ୍ୟ କିନ୍ତୁ ପୁନରପି ଜଳବାଷ୍ପ ପରି ବାସନା ରୂପ ଶାନ୍ତି ସୁଧା ଆଶ୍ରୟ କଲେ ଈଶ୍ୱରତ୍ୱ ଇହ ଜନ୍ମ ବା ବହୁ ଜନ୍ମ ପରେ ଭଗ-ଦ୍ରୁଷ୍ଣାଙ୍କ କୃପାରେ ଲାଭ କରେ । ଜୀବଜଗତ ପ୍ରୀତି, ଜଗତପ୍ରେମ, ଜଗତଶାନ୍ତି, ଜଗତ ଉଦାରତା ଓ ଜଗତ ଭଲବାସା ଲାଭରେ ଜଗତରେ ସମସ୍ତ ସ୍ୱାର୍ଥ କାମନା ତ୍ୟାଗ କଲେ ସେହି ସୁଧାଶାନ୍ତିମୟ ନିତ୍ୟ ସନାତନ ଅଦ୍ୱୈତ, ଅଦ୍ୱିତୀୟ, ପୂର୍ଣ୍ଣଜଗନ୍ନାଥ ଲାଭରେ ପରମଜ୍ଞାନରେ ପରମାତ୍ମାରେ ମିଳ ଜୀବତ୍ୱ ଲୀନରେ ଶାଶ୍ୱତ ଲାଭଦ୍ୱାରା ଚରିତାର୍ଥ ଲଭିବ; ଅନ୍ୟଥା ବୃଥା । ପ୍ରେମପ୍ରୀତିପୂର୍ଣ୍ଣ ହୃଦୟେ ନିସ୍ୱାର୍ଥେ ଦୃଢ଼ ବିଶ୍ୱାସରେ ଭକ୍ତି ଶ୍ରଦ୍ଧା କରି ସତ୍ୟବ୍ରତ ପାଳନ କଲେ ବ୍ରହ୍ମଜ୍ଞାନ ପ୍ରାପ୍ତ ହେବାର ଏ ଗୋଟିଏ ପ୍ରଶସ୍ତ ଉପାୟ ଅଟେ । ଅତଏବ ନିତ୍ୟ ବାଧ୍ୟ ହୋଇ ଆହାର ପାନ ଓ ଶୟନାଦି ନିତ୍ୟକର୍ମ କଲା ପରି ନିୟମିତ ସମୟରେ ଈଶ୍ୱର ଆରାଧନା ରୂପ ପବିତ୍ର ନାମ ଜପ କରିବାରେ ବାଳକବାଳିକାମାନଙ୍କୁ ଦେବା ଏବଂ ତତ୍ପରେ ଧର୍ମବୀର ସାଧୁମାନଙ୍କର ଜୀବନଚରିତ୍ର ସଂକ୍ଷେପରେ ଗଳ୍ପ କରି ଶୁଣାଇବା ଅଥବା ଜୀବନୀ ଓ ଇତିହାସମାନ ପାଠ ବୟସରେ କରିବାକୁ ଦେବା । ବୃଦ୍ଧ ଓ ସୁବିବେକୀ ବ୍ୟକ୍ତିଗଣଙ୍କର ପ୍ରଧାନ ମତ । ବିଶେଷତଃ ଯେଉଁ ବାଳକମାନଙ୍କର

ମାତା ସଚ୍ଚରିତ୍ରା ବୁଦ୍ଧିମତୀ ଓ କର୍ତ୍ତବ୍ୟପରାୟଣା; ସେହିମାନଙ୍କ ସନ୍ତାନ ସନ୍ତତିଗଣ ପ୍ରାୟପୂର୍ଣ୍ଣ ମହାପୁରୁଷ ପଦବୀକୁ ଉନ୍ନତ ହୁଅନ୍ତି; ମଧ୍ୟ ସେହି ସେହି ଦେଶବାସି ଏ ସଭ୍ୟତାର ଉଚ୍ଚ ସୋପାନ ଅଧିରୋହଣ କରି-ବାରେ ସକ୍ଷମ ହୋଇପାରନ୍ତି । ଏ ବିଷୟର ଭୂରି ଉଦାହରଣ ଜଗତରେ ପୂର୍ଣ୍ଣ ମାତ୍ରାରେ ସର୍ବଦା ଦେଖାଯାଏ, ମନେ କର ଯେଉଁ ସନ୍ତାନ ସନ୍ତତିମାନେ ନିଜ ସୁଶୀଳା ମାତାଠାରେ ପ୍ରାଥମିକ ଶିକ୍ଷାଲାଭ କରନ୍ତି ସେହି ସନ୍ତାନ ସନ୍ତତିମାନେ ଜଗତରେ ସୁଯଶୀ ଓ କୀର୍ତ୍ତିମାନ୍ ହୋଇ ଉନ୍ନତ ମନ୍ଦିରର ଉଚ୍ଚତମ ସୋପାନରେ ଅଧିରୋହଣ କରୁ-ଥିବାର ଅବନୀର ଇତିହାସ ଓ ମହାତ୍ମାମାନଙ୍କର ଜୀବନୀ ସାକ୍ଷ୍ୟ ପ୍ରଦାନ କରୁଅଛି । ଦେଖ ଭାରତବର୍ଷର ଶ୍ରୀରାମ, ଶ୍ରୀକୃଷ୍ଣ, ବୁଦ୍ଧ, ଭୀଷ୍ମ, ଯୁଧି-ଷ୍ଠିର, କାଳିଦାସ, ବିକ୍ରମାଦିତ୍ୟ, ଜ୍ଲ ଗାନ୍ଧୀ, ପ୍ରତାପରୁଦ୍ର, ଶ୍ରୀଚୈ-ତନ୍ୟ, ରାମମୋହନ, ବିଦ୍ୟାସାଗର; ନିଜାଲ—ଇଶୁଅନ; ଜାପାନର ମନସିନ; ପାରସ୍ୟର ସିକାରୁଦ; ତୁରସ୍କର ମିଶୁ ଓ ମହମ୍ମଦ; ଇଂଲ-ଣ୍ଡର ସେକ୍ସପିଅର, ଗ୍ଲାଡ଼ଷ୍ଟୋନ ଓ ଭିରଚେଣ୍ଟସି, ଜର୍ମାନିର ବିସ-ମାର୍କ; ଫ୍ରାନ୍ସର ମିସ୍ତ୍ରିଅ; କର୍ସିକାର ନେପୋଲିଅନ; ଆମେରିକାର ଜର୍ଜ ୱାସିଂଟନ୍ ଆଦି; ସୁବିଖ୍ୟାତ ମହାତ୍ମାଗଣ ପ୍ରାଥମିକ ଶିକ୍ଷା, ରୂପାଙ୍ଗଦାୟିନୀ ଜନନୀଙ୍କ ଦ୍ୱାରା ପ୍ରାପ୍ତ ହୋଇଥିବାର ପ୍ରମାଣିତ ହେତୁ ଜଗତ ପ୍ରଖ୍ୟାତ ଓ ଚିରଜୀବୀ ଅଟନ୍ତି । ଅତଏବ ମୋକ୍ଷଦାତାମାନେ ଶିକ୍ଷିତା ହେଲେ ପରେ ସନ୍ତାନଗଣ ସର୍ବ ବିଷୟର ଉନ୍ନତ ବିନ୍ଦୁର ଚରମ ଗତରେ ଶୃଙ୍ଖଳିତ ହେବାର ସମ୍ପୂର୍ଣ୍ଣ ସମ୍ଭାବନା । ସୂକ୍ଷ୍ମ ବିଚାର କର ଦେଖିଲେ ଦେଶ ପ୍ରଚଳିତ ଗୋଟିଏ ପୁରୁଣା କଥାର ଭାବ କେ-ମନ୍ତ ମହାନନ୍ଦ ସମ୍ପାଦନ କରୁଅଛି " ମାଙ୍କଲେ ସରୁ ସୂତା ଓ ମାଙ୍କ-ଲେ ମୋଟ କଥା" । ଏବେ ସୁବିଜ୍ଞମାନେ କର ଅସ୍ତିକ ଭାବ, କଥା

ମଧ୍ୟେ କିଏ ନାସ୍ତିକ ଭାବ ଆଉ ମାନିବା ମଧ୍ୟେ କିଏ ଆଲୋଚନା କରିବା । ତେବେ ଯେଉଁମାନେ ଆସ୍ତିକ ସେମାନଙ୍କର ଉଚିତ ଯେ ସ୍ୱଭାବତଃ ସରୁ ହୋଇ ଧର୍ମଶାସ୍ତ୍ରର ପ୍ରଚଳିତ ସୂକ୍ଷ୍ମଭାବମାନ ବୃଥାରେ ଆଲୋଚନାଦ୍ୱାରା ଛିନ୍ନ ଭିନ୍ନ କରିବେ ନାହିଁ । ଯାହା ଅଛି ତାହାକୁ ମାର୍ଜିତ ରୁଚିରେ ପରିଷ୍କାର ଓ ସରଳ ଭାବରେ ସାଧନ କରି ନିଜର ଜୀବନ ଉନ୍ନତ କରିବେ । ଆଉ ଯେଉଁମାନେ ନାସ୍ତିକ ସେମାନଙ୍କର ଉଚିତ ଯେ କଥା ପରି ଧର୍ମଶାସ୍ତ୍ରର ପ୍ରଚଳିତ ନିଗୂଢ଼ ପୂର୍ଣ୍ଣ ଭାବ ଓ ମାର୍ଜିତରୁଚି ପ୍ରଣୋଦିତ ସୂକ୍ଷ୍ମଭାବମାନ ବୃଥାରେ ଜଳପ ବସରୁ ତ୍ୟାଗ-ନ କରି କିମ୍ବା ଏକବୁଝା ହୋଇ ନ ରହି ସଂସାରର ସମସ୍ତ କର୍ମର ହେତୁ ଅନ୍ୱେଷଣଦ୍ୱାରା ଆଲୋଚନା କରୁ୨ ଦିନେ ନାସ୍ତି ଶାସ୍ତ୍ରୋଲ୍ଲି-ଖିତ ନାସ୍ତିକ "ଖପୁଷ୍ପ" ନୁହ ସ୍ୱତଃସିଦ୍ଧ ପ୍ରମାଣ ଲଭିବାରୁ ଅସ୍ତିକତ୍ୱ ସ୍ୱୀକାର କଲା ପରି ସର୍ବଦୁଃଖ ବିନାଶକାରୀ ଶାନ୍ତିମୟ ଈଶ୍ୱରଙ୍କୁ ପ୍ରାପ୍ତ ହୋଇ ପାରିବ । ଅତଏବ ଅଦୂରରେ ଘଟନାଦିଙ୍କୁ ଅବଲମ୍ବନ କଲେ ଅନନ୍ତ ଓ ଅବିନଶ୍ୱର ଅଶାନ୍ତି ହୀନ ଜୀବନ ଲାଭ କରି ପାରିବ । ଯେପରି ଗୋଟିଏ କଥା ଅଛି ଯେ ଦିନକରେ ବେଦ ମୁନିଙ୍କ ଦ୍ୱାରା ଜିଜ୍ଞାସିତ ହୋଇ ଶିଷ୍ୟକୁ କହିଲେ ପୃଥିବୀ ବୃହତ ସତ୍ୟ ମାତ୍ର ପୃଥିବୀଠାରୁ ସମୁଦ୍ର ଜଳରାଶି ତହିଁରୁ ବଡ଼ କାରଣ ପୃଥିବୀର ଚତୁ-ର୍ଦ୍ଦିଗରେ ବ୍ୟାପି ରହିଅଛି, କିନ୍ତୁ ଏହି ଜଳରାଶିକୁ ଗଣ୍ଡୂଷ ମାତ୍ର କରି ଅଗସ୍ତ୍ୟମୁନି ପାନ କରିଥିଲେ । ଏଣୁ ଅଗସ୍ତ୍ୟମୁନି ବଡ଼ । ହେଲେହେଁ ଏହି ଅଗସ୍ତ୍ୟମୁନି ସାମାନ୍ୟ ଖଦ୍ୟୋତ ଆକାରରେ ଅମ୍ବରରେ ଦୃଷ୍ଟି ଗୋଚର ହୁଅନ୍ତି; ଅତଏବ ଆକାଶ ସର୍ବାପେକ୍ଷା ବୃହତ ବୋଲି ପ୍ର-ମାଣିତ ହେଲା । ମାତ୍ର ବାମନାବତାରେ ପ୍ରଭୁ ଗୋଟିଏ ପାଦଦ୍ୱାରା ସମସ୍ତ ଆକାଶ ବ୍ୟାପ୍ତ କରିନ ଥିଲେ ଏ ହେତୁ ଗଣିତ ଶାସ୍ତ୍ରଦ୍ୱାରା ବୁଦ୍ଧି

ଓ ବେଦେର ପ୍ରୟୋଗରେ ପ୍ରମାଣିତ ହେଲା ଯେ ଅନାଦି ଅନନ୍ତ ବିଭୁ ଭିନ୍ନ ଅପର କେହି ବୃହତ୍ରୁ ବୃହନ୍ତ ଯେହେତୁ ସେ ଅପାର ଓ ଅଗମ୍ୟ ଏପରି ଯେ ହରି ସେ ନିଜେ ଶ୍ରୀ ମୁଖରେ କହିଅଛନ୍ତି ଯେ ମୋତେ ଯେ ଭକ୍ତ ଭକ୍ତିଦ୍ୱାରା ବଶ କରି ପାରନ୍ତି ସେ ମହାନ୍ ଓ ଜଗତରେ ପ୍ରଧାନ । ଏଣୁ କରି ବଡ଼ ହେବା ଇଚ୍ଛା ବଳାଇଲେ ସେହି ଭକ୍ତି ଯୋଗଦ୍ୱାରା ପରମାନନ୍ଦଙ୍କୁ ହୃଦପଦ୍ମ ସନରେ ବସାଇ ପାରିଲେ ସର୍ବଶ୍ରେଷ୍ଠ ସଦାଶୟତା ଲାଭ ହୁଅଇ । ଅନ୍ତର ଭକ୍ତି କୌଣସି ବ୍ୟକ୍ତି ହୃଦୟରେ ନ ଥିବାରୁ ସେ ବ୍ୟକ୍ତି ବୋଧ କରି ହତାଶ ହୋଇ ପାରନ୍ତି ମାତ୍ର ଅଧୀ-ହ୍ରୀନ ହେବା ପ୍ରୟୋଜନ ନାହିଁ; କାରଣ ଭକ୍ତି ରୂପ ଈଶ୍ୱର ସତ୍ତ୍ୱର ଅଙ୍କୁର ବୀଜ ସମସ୍ତଙ୍କ ହୃଦୟରେ ନିହିତ ଅଛି । ଏଣୁ ବୋଲାଯାଏ ବ୍ରହ୍ମାଣ୍ଡ-ରେ ଯେ ସମସ୍ତ ଦ୍ରବ୍ୟମାନ ଅଛି । ସେ ସମସ୍ତ ଦ୍ରବ୍ୟମାନ ପିଣ୍ଡରେ ପୂର୍ଣ୍ଣ ଅବସ୍ଥାରେ ଅଛି । ମନେକର ଗୋଟିଏ ସାମାନ୍ୟ ବଟବୀଜ କିମ୍ବା ଅମ୍ବ ଟାକୁଆରେ ଯେପରି ସୁବୃହତ୍ ବଟ କିମ୍ବା ଅମ୍ବ ବୃକ୍ଷର ସମସ୍ତ ଆକାର ପ୍ରକାରାଦିର ସନ୍ନିବେଶ ବିଜ୍ଞାନ ଅଣୁବୀକ୍ଷଣାଦି ଯନ୍ତ୍ରଦ୍ୱାରା ପ୍ରମାଣ କରୁଅଛି । ସେହିପରି ମନୁଷ୍ୟର ସ୍ଥୂଳ ପିଣ୍ଡରେ ସମସ୍ତ ସଚରାଚର ବ୍ରହ୍ମାଣ୍ଡ ନିହିତ ଅଛି । ଆଉ ଯେମନ୍ତ ବାଜିକର ପଦ ପଦାର୍ଥବଳରେ ଗର୍ତ୍ତରୁ ବିଷଧର ସର୍ପକୁ ବାହାର କରି ପାରେ ସେହିପରି ସାଧୁ ମନୁଷ୍ୟ ଭକ୍ତି ଓ ପ୍ରତିଜ୍ଞା ଦୃଢ଼ତା ହେତୁରୁ ପରମେଶ୍ୱରଙ୍କୁ ଜ୍ଞାନଚକ୍ଷୁରେ ଲାଭ କରିପାରେ । ଅନ୍ତର ଇଚ୍ଛାନୁଯାୟୀ ସେହି ଭକ୍ତିଯୋଗବଳରେ ପୂର୍ବ ପୁରାଣ କଥିତ ପ୍ରକାରେ ଦେହରୁ ଆତ୍ମାକୁ ମହାତ୍ମା ନାରଦ ଓ ଶୁକ ମୁନିଙ୍କ ତୁଲ୍ୟ ପୃଥକ୍ କରି କୋଟି ତାଡିତ ବଳଗତିରେ ସହସ୍ର ୨ ଯୋଜନର ଧ୍ୟାନ କଲା ମାତ୍ରେ ସେ ସ୍ଥାନକୁ ଯାଇ ଅବଗତ ହୋଇପାରନ୍ତି । ସମ୍ପ୍ରତି ଅମେରିକା ଇଯୁନାଇଟେଡଷ୍ଟେଟସ୍ର ଏଣ୍ଡ୍ରର ଯେକସନ୍ ନାମକ

ଏକ ସାହେବ ଏକ ଦିନ ନିଜ କୋଠରିରେ ବସିଅଛନ୍ତି । ଏମନ୍ତ ସମୟରେ ତତ୍ରତ୍ୟ ଥାଇଲା ସାହେବଙ୍କ ମେମ ସାହେବ ଆସି କହିଲେ ଆମ୍ଭ ସ୍ୱାମୀ ଥାଇଲା ସାହେବ ତିନି ବର୍ଷ ହେଲା ବିଲାତ ଯାଇଅଛନ୍ତି କିନ୍ତୁ ଦୁଇ ବର୍ଷ ହେଲା କୌଣସି ଚିଠି ପତ୍ର ଆସୁ ନାହିଁ ବିଶେଷରେ ଅନ୍ତର ତାଙ୍କ ସହିତ ସାକ୍ଷାତ ହେବ ବୋଲି ମନ ବଡ ବ୍ୟସ୍ତ ହେଉ-ଅଛି । ତାଙ୍କ ସମ୍ବାଦ ନ ମିଳିବା ଯାଏ ରୁଚି ପାଇଁ ବିଷୟ ବିଷ ହୋଇ ଅଛି । ତହୁଁ ଏଣ୍ଡ୍ରର ଯେକସନ୍ କହିଲେ-ଅପେକ୍ଷା କର [ ଆମ୍ଭେ ବୁଝି ଆସୁଁ ] । ଏହା କହି ନିଜ କୋଠରିସ୍ଥ ଦ୍ୱାର ବନ୍ଦ କରି ଅପଣା ଆରାମୀଚୌକି ଉପରେ ଧ୍ୟାନରେ ଚକ୍ଷୁ ବନ୍ଦ କରି ବସି ଗାମ୍ଭିର ହେଲେ ଅନନ୍ତର କିଛିକ୍ଷଣରେ ବିଲାତରେ ଯାଇ ପହଞ୍ଚି ପାଇଲା ସାହେବଙ୍କ ସହିତ ଯାଇ ଦେଖା କରି ମିଷ୍ଟାଳାପ ପରେ କହିଲେ ତୁମ୍ଭ ମେମ ସାହେବ ତୁମ୍ଭ ଯୋଗେ ବଡ଼ ବ୍ୟସ୍ତ ଅଛନ୍ତି ତୁମ୍ଭେ ତିନି ବର୍ଷ ହେଲା ତାହିଁ ଦୁଇ ବର୍ଷ ହେଲା କି ହେତୁ କିଛି ସମ୍ବାଦ ଦେଉ ନାହଁ ଉତ୍ତରରେ ପାଇଲା କହିଲେ ଆମ୍ଭେ ବିଶେଷ ସଙ୍କଟ ଓ ବିପଦରେ ପଡିଥିଲୁଁ ସମ୍ପ୍ରତି ସେ ସମସ୍ତ ଉପଶମ ହୋଇଅଛି ଏ ହେତୁ ଅଦ୍ୟ ରାତ୍ର ଜାହାଜରେ ଅମେରିକା ଯିବାର ସମସ୍ତ ବନ୍ଦୋବସ୍ତ ହୋଇଅଛି। ତୁମ୍ଭେ କିଛି ଖାଇବ ନାହିଁ ? ନା ନା ମୁଁ କିଛି ଖାଇବି ନାହିଁ ଖାଇଅଛି ଏହା କହି ସେଠାରୁ ବିଦାୟ ହୋଇ ଆସି ନିଜ ଚୌକିସ୍ଥ ଦେହ ଚେତନ କରାଇ ଦ୍ୱାର ଖୋଲି ମେମ ସାହେବଙ୍କୁ କହିଲେ ତୁମ୍ଭ ସ୍ୱାମୀ ସହିତ ସନ୍ତାନମାନେ ଉତ୍ତମରେ ଅଛନ୍ତି । ସେ ଅଙ୍କରେ ବିଲାତରୁ ବାହାରି ଅମୁକ ତାରିଖରେ ପୋଅର ରେଲବେ ନିକଟରେ ପହଞ୍ଚିବେ ଅତଏବ ସେ ଦିବସ ତୁମ୍ଭେ ସାକ୍ଷାତ କରି ପାରିବ ତହୁଁ ମେମ ସାହେବ ଖୁସି ଯାଇ ନିର୍ଦ୍ଦିଷ୍ଟ ଦିବସ ରେଲବେ ଷ୍ଟେସନରେ ନିଜ

ଗାଡ଼ି ନେଇ ଅପେକ୍ଷା କରୁଅଛନ୍ତି ଏମନ୍ତ ସମୟରେ ପାଉଲ୍ ସାହେବ ଜାହାଜରୁ ଅବତୀର୍ଣ୍ଣ ହୋଇ ଷ୍ଟେସନକୁ ଆସି ମେମ ସାହେବଙ୍କୁ ଦେଖି ପଚାରିଲେ ତୁମ୍ଭେ କାହାକୁ ନେବା ନିମନ୍ତେ ଗାଡି ନେଇ ଆସିଥିଲ । ମୁଁ ଏଣ୍ଡ୍ରୁଜେନ୍ସନ୍ ସାହେବଙ୍କଠାରୁ ଶୁଣିଥିଲି ଯେ ଆପଣ ଆଜି ଆସି ପହୁଞ୍ଚିବେ ସେହି କାରଣରୁ ଗାଡି ନେଇ ଆସିଥିଲି । ପାଉଲ୍ କହିଲେ ଏ ବଡ଼ ମିଛ କଥା । ମୁଁ ଏଣ୍ଡ୍ରୁଜ୍‌କୁ ବମ୍ବଇରେ ଦେଖି ଆସିଲି ତୁମ୍ଭ କଥାରୁ ପ୍ରକାଶ ଯେ ସେ ଏଠାରେ ଅଛନ୍ତି । ପ୍ରତ୍ୟୁତ୍ତରରେ ମେମ କହିଲେ ଆସ ତାଙ୍କ ସହିତ କୋଠିରେ ସାକ୍ଷାତ କରି ସତ ମିଛ ବୁଝି ପାରିବ । ତହୁଁ ଦ୍ରବ୍ୟାଦି ଆସିବା ପକ୍ଷରେ ସବୁ ବନ୍ଦୋବସ୍ତ କରି ଗାଡିରେ ଆସି ଏଣ୍ଡ୍ରୁଜେକସନ୍ ସଙ୍ଗେ ସାକ୍ଷାତ କଲା ପରେ ସମସ୍ତ ବୃତ୍ତାନ୍ତ ଅବଗତାନ୍ତର ସେଠାରେ ଆତିଥ୍ୟ ଗ୍ରହଣପୂର୍ବକ ବଡ ଆଶ୍ଚର୍ଯ୍ୟାନ୍ୱିତ ହୋଇ ଆସିଲେ । ଏହି ଦୃଷ୍ଟି ଯୋଗର ଆଶ୍ଚର୍ଯ୍ୟଜନକ ବ୍ୟାପାର ଯେ ପ୍ରବନ୍ଧ ଛଡା ଅପର କୌଣସି ସ୍ଥାନର ସମ୍ବାଦ ରୂପ ଜ୍ଞାନର ଧନ ତାହା କେବେହେଁ ନୁହେଁ ମାତ୍ର ସମ୍ପ୍ରତି ଭାରତବାସୀ ନିଜ ପୂର୍ବ ଗୌରବର ଅମୂଲ୍ୟ କୋହିନୂର ଧନ ହରାଇ କେବଳ ମନୋହାରୀମାନଙ୍କ ଶୃଙ୍ଖଳବଦ୍ଧ୍ୟଶାଳୀ ହାତରେ ଭୁଲୁଅଛନ୍ତି । ଏଣୁ କହେ ଦେଶୀ ବିଦେଶୀ ମହାତ୍ମାମାନଙ୍କ ଜୀବନୀ ପାଠ କର, ଦେଶୀୟ ସଦାଶୟ ମହାତ୍ମାଗଣଙ୍କ କାର୍ଯ୍ୟକଳାପ ଅନୁସନ୍ଧାନଦ୍ୱାରା ଅନୁକରଣ କର; ଭାରତ ଗୃହର ଦ୍ରବ୍ୟ ସମୂହ ପରତନ୍ତ୍ର କରି ବ୍ୟବହାରକର ଶାସ୍ତ୍ର ଅଧ୍ୟୟନଦ୍ୱାରା ଓ ଦେଶ ପର୍ଯ୍ୟଟନଦ୍ୱାରା ସାଧ୍ୟାନୁଯାୟୀ ସର୍ବେ ଧର୍ମଭାବରେ ଉନ୍ନତ ହୁଅ ଏବଂ ସର୍ବ ପ୍ରାଣୀଙ୍କୁ ପ୍ରେମରେ ସମାଦର କର ତେବେ ଜାଣିବ ତୁମ୍ଭର ପୂର୍ବପୁରୁଷମାନେ କପରି କର୍ମନିର୍ମିତ ପ୍ରସ୍ତର ଗୃହରେ ଜନ୍ମି ନ୍ୟାୟରେ ସୁଖରେ ଥିଲେ ମାତ୍ର

ତୁମ୍ଭେମାନେ ଅଯୋଗ୍ୟ ଦୋଷରୁ ଅସଦୋପଯୋଗୀ ହେବୁ କପଟ ଅପର ଉପକାରର ଯୋଗ୍ୟ ନୁହଁ ମଧ୍ୟ ତୁମ୍ଭର ପୂର୍ବପକ୍ଷ ପର ନାହିଁ କ ନାମ ନାହିଁ, ଏବେ ଦେଖ ସେହି ପରମ ପିତା ଈଶ୍ୱରଙ୍କ ଦୟାରୁ ଭାଗ୍ୟକ୍ରମେ ତୁମ୍ଭମାନଙ୍କର ଜଗତ ପ୍ରଖ୍ୟାତା ବନ୍ଧୁ ମାନ୍ୟା ଭାରତେଶ୍ୱରୀ ମାତୃପର ତୁମ୍ଭମାନଙ୍କୁ ପୁତ୍ରବତ୍ ପାଳୁଅଛନ୍ତି । ତୁମ୍ଭେମାନେ ଏମନ୍ତ ଜ୍ଞାନଦାୟିନୀ ମାତାଙ୍କ କୋଳରେ ରହି ଯେବେ ଅଜ୍ଞାନ ଅନ୍ଧାରରେ ଥିଲାପର ଅଳସ ହେବୁ ମାତୃବଚନ ମଳନ କରବ ତେବେ ଭାରତବାସୀଙ୍କର ମନୁଷ୍ୟ ଜନ୍ମ ନ ହୋଇ ଥିବା ସର୍ବତୋଭାବେ ବଧେୟ ଥିଲା । ଅତଏବ ଜ୍ଞାନଦ୍ୱାର ଭକ୍ତିଯୋଗର ଶିକ୍ଷା କର ତେବେ ପ୍ରେମଶୂନ୍ୟ ହୃଦୟରେ ଜଗତ ପ୍ରେମଲାଭ କର ସେହି ଜଗତକର୍ତ୍ତା ପରମେଶ୍ୱରଙ୍କୁ ଲାଭ କର ପାରବ । ନତୁବା ଅନ୍ୟଥା କପୋଲ କଳ୍ପିତ କିମ୍ବା ସ୍ୱପ୍ନ ଅଥବା କୁହୁକ ସଦୃଶ ଭ୍ରମିତରେ ବୃଥା ଯାଏ ।

ଅନ୍ତର ଗିଲ୍‌ଟିନ ଶିଖ ସୁଜନ
ଅନ୍ତର ରକ୍ଷାର କର ଅର୍ଜନ
କଲେ ଭୂଷିବ ମର୍ଦ୍ଦନ ଚକ୍କଣ
ଘୃତସାର ଦ୍ରବ୍ୟ କର ଭକ୍ଷଣ
ସ୍ୱତଃ ହିତ୍ତ ବଧି
ସୁଜାଣ ପାଳ'ନ ଧୃଷ୍ଟ ଅବଧି । ୧ ।
ଅନ୍ତର ସୁନ୍ଦର କଲେ କ ଫଳ
ଅନ୍ତର ସୁନ୍ଦରେ ସରବ ଫଳ
ଜୀବ ହିଂସାରେ ନାମ ଅଗଦମ
ଇନ୍ଦ୍ରିୟ ତୃପ୍ତି ସତତ ମଧ୍ୟମ
ବୁଝିଲେ ଅବାଳ

ସମନ ନ କରେ ଅନ୍ତେ କଟାଳ । ୨ ।
ଦେଶ ପର୍ଯ୍ୟଟନ ଜୀବନୀ ପାଠ
ପ୍ରତିଜ୍ଞାପାଳନ ଗୁଣ ସୁଗୁଟ
ଫିଟିବ ସର୍ବ ଅଜ୍ଞାନ କବାଟ
ଦିଶିବ ସଲକ୍ଷ୍ୟ ସରଳ ବାଟ
ଚତ୍‌ଦଭୁବନ
ସୁଜ୍ଞାନେ ଗମିବ ବିବେକୀଜନ । ୩ ।

ପାଶ୍ଚ ଯଚଣରେ କର ବିଚାର, ଅପର ସୁଗୁରୁ ଅଟଇ ଗୁରୁ, ସର୍ବ ମେଳେ ସତ୍ୟ ହେବ ପ୍ରଚାର, ହିନ୍ଦୁତ୍ୱ ଧର୍ମ ଜଗତସାର, ବୁଦ୍ଧ ଖ୍ରୀଷ୍ଟ ଅଜ, ହିନ୍ଦୁ ବ୍ରହ୍ମମତେ ସର୍ବ ସମାନ । ୪ ।

ମାତା କୋଳୁ ଶିଖ ପିତାସମାନ, ହୋଇବ କାଳରେ ଶାସ୍ତ୍ର ପ୍ରମାଣ, ବୃଥା ଆଡ଼ମ୍ବର ଅଟେ ପାଷାଣ, ସତ୍ୟ ଧନ ଲଭ କରିବ ଟାଣ, ଧର୍ମ ଧନ ଥିଲେ, ଶତ୍ରୁ କଣା ଶ୍ରମ ନ ହେବ ଭଲେ । ୫ ।

ବାକ୍ୟ ବିତଣ୍ଡାରେ ନୁହେ କଣ୍ଟକ, ନ୍ୟାୟେ କାର୍ଯ୍ୟ ଦକ୍ଷ ହେବା ବିହିତ, ପ୍ରଭୁ ଶ୍ରୀ ଚୈତନ୍ୟ ଭାବ ଉଦିତ, ଶିଷ୍ୟ ପରୀକ୍ଷାରେ ବଳାଇ ଚିତ୍ତ, ଦକ୍ଷେ ଭ୍ରମଣରେ, ଶଙ୍କାର ସଦନ ପାର୍ଶ୍ୱେ ମିଳିଲେ । ୬ ।

ଶଙ୍କାର ଯତ୍‌ଆଉତ୍‌ଟାକୁ ମନ, କର ହସ୍ତ କଲେ ସେ ପ୍ରସାରଣ, ସାଧନ୍ତି ଶିଷ୍ୟ ସଙ୍ଗେ କଲେ ପାନ, ଅନ୍ୟ ମଣିଲେ ହେଲା ପ୍ରାଣ ଦାନ, ଭରେ ପରିଦୃଷ୍ଟ, ଧର୍ମ ହୀନତାରେ ହୋଇଲେ ଖୁଷ୍ଟ । ୭ ।

ଜ୍ଞାନ ସୁବର୍ଣ୍ଣ ଧୀରମତି କର, ଜ୍ଞାନ ବଢ଼ି ତେଜ ହୃଦରେ ଧର, ଅର୍ଣ୍ଣ କଳ ବାପୁ ମୂଳତେଜର, ଏ ସର୍ବ ଆୟୁର୍ବେଦ ଅଷ୍ଟ ବ ଭର, ସମ ଦରକରୀ, ହେଲେ ବନେ ତାପ ଭସ୍ମ ନ କର । ୮ ।

ଉତ୍ସାହ ବଳ ସୁଦୃଢ଼ ପ୍ରତିଜ୍ଞା, ହୃଦବନେ ଶ୍ରେଷ୍ଠ ଏ ଜୀବ ସିନା,

ମନ ହୃଦଗଜା ଅଟେ ବଧିରେ, ପ୍ରଜା ପାଳଇ ଅଛ ସୁବିଧିରେ, ଭବ ବନବାସ, ଅଜ୍ଞାତ ଦୋଷେ ସବ ହୁଏ ନାଶ । ୯ ।

ଏକଧର୍ମ ଏକ ଜ୍ଞାନ କଥିଲେ, ଜଗତ ହିତେ ଜୀବନ ତେଜିଲେ, ଏକତାସୂତ୍ର ଗଢ଼ିଲେ ସଂସାର, ଏକଜଳ ଗଣି ଜଳଧିସାର, ଏକମନ କଲେ, ଐକ୍ୟ ଧର୍ମେ ଈଶ ମିଳନ୍ତି ଭଲେ । ୧୦ ।

ଏକା ଧର୍ମଧନ ବଣସଂସାରେ, ବନ୍ଧୁଜନରେ ସବ ମିଳେ ରସାରେ, ଥିଗେ ନ୍ୟାଯ୍ୟ ନୀତି କର ଅର୍ଜନ, ଅଳସ ଅଧର୍ମ କର ବର୍ଜନ, ଦୃଢ଼ବ୍ରତୀ ହେଲେ, ବିଶ୍ୱଜୟୀ ହେବ ନ ଭାବ ହେଲେ । ୧୧ ।

ସମାପ୍ତ ।

